# ସ୍ମୃତି ତ କଦାପି ନୁହେଁ ଫିଙ୍ଗିବାର

ପ୍ରାଧ୍ୟାପିକା ଡକ୍ଟର ମନୋରମା ବିଶ୍ୱାଳ ମହାପାତ୍ର



ଓଡ଼ିଶା ବୁକ୍ ଷ୍ଟୋର

# ସ୍ମୃତି ତ କଦାପି ନୁହେଁ ଫିଙ୍ଗିବାର

ଲେଖିକା :
ପ୍ରାଧ୍ୟାପିକା ଡକ୍ଟର ମନୋରମା ବିଶ୍ୱାଳ ମହାପାତ୍ର
ପ୍ରାଧ୍ୟାପିକା ରମାଦେବୀ ମହିଳା କଲେଜ, ଭୁବନେଶ୍ୱର, ୭୫୧୦୦୭
ପ୍ରୀତମପୁରୀ, ୧୨୫, ଆଚାର୍ଯ୍ୟବିହାର ଭୁବନେଶ୍ୱର-୧୩

ପ୍ରକାଶକ :
ଶ୍ରୀ ଗୋବିନ୍ଦ ଚରଣ ପାତ୍ର
ଓଡ଼ିଶା ବୁକ୍ ଷ୍ଟୋର
ବିନୋଦ ବିହାରୀ, କଟକ-୭୫୩ ୦୦୨

ପ୍ରଚ୍ଛଦ :
ଶ୍ରୀ ଅସୀତ୍ ମୁଖାର୍ଜୀ

ପ୍ରଥମ ପ୍ରକାଶ :
ଅକ୍ଷୟ ତୃତୀୟା—୫ ମେ, ୧୯୯୨

ମୁଦ୍ରଣ :
ଗୀତାଞ୍ଜଳି ପ୍ରେସ
କଟକ-୨

ମୂଲ୍ୟ : ଦଶ ଟଙ୍କା ମାତ୍ର

**SMRUTI TA KADAPI NUHE PHINGIBARA**

**Dr. Manorama Biswal Mohapatra**
Reader in Oriya, R. D. Women's College
Bhubaneswar-7, Phone-53113

Published by
**Sri Govinda Charan Patra**
**ORISSA BOOK STORE**
Binod Behari, Cuttack-753 002

Cover design :
Asit Mukherjee

1st. Publication :
Akhaya Trutiya—5th May, 1992



Printed at :
**Gitanjali Press**
Cuttack-2

Price : **Rs. 10-00**

# ଉତ୍ସର୍ଗ

ପ୍ରଥିତଯଶା ସମାଲୋଚକ

ପ୍ରଫେସର ଡକ୍ଟର ଖଗେଶ୍ୱର ମହାପାତ୍ରଙ୍କୁ

ମନୋରମା ମହାପାତ୍ର

# ଦୁଇ ପଦ

'ସ୍ମୃତି ତ କଦାପି ନୁହେଁ ସଙ୍ଗିବାର' ଶୀର୍ଷକ ଲେଖାଗୁଡ଼ିକ ଧରିତ୍ରୀର ରବିବାର ସାହିତ୍ୟ ବିଶେଷାଙ୍କରେ କ୍ରମାଗତ ଭାବରେ ପ୍ରକାଶିତ ହୋଇ ଯାଇଛି । ଆଉ କେତୋଟି ସାହିତ୍ୟ ସମ୍ପର୍କିତ ଲେଖା ମଧ୍ୟ ବିଭିନ୍ନ ସମୟରେ ପତ୍ରିକାରେ ପ୍ରକାଶିତ ହୋଇଛି । ମୁଖ୍ୟତଃ ବ୍ୟକ୍ତିଗତ ସ୍ମୃତିର କଥା, ସାହିତ୍ୟ ଆଲୋଚନା ନୁହେଁ । ଆଜି ସେଗୁଡ଼ିକ ଏକାଠି ପ୍ରକାଶିତ ହେବା ଅବସରରେ ପ୍ରକାଶକ ଶ୍ରୀ ଗୋବିନ୍ଦଚରଣ ପାଣି ଏବଂ ଧରିତ୍ରୀର ଶ୍ରୀ ତଥାଗତ ଶତପଥୀ ସମ୍ପାଦକଙ୍କୁ ଧନ୍ୟବାଦ ଜଣାଉଛି ।

ପ୍ରୀତମ୍‌ପୁଷ୍ପ
ଅକ୍ଷୟ ତୃତୀୟା
୫ ମେ, ୧୯୯୨

ମନୋରମା ମହାପାତ୍ର

# ପ୍ରକାଶିତ କବିତା ପୁସ୍ତକ ଗ୍ରନ୍ଥ

## କବିତା

* କ୍ଷଣଲଗ୍ନ
* ବ୍ରତତୀ
* ଫୁଲଫୁଟା ମୁହୂର୍ତ୍ତ
* ସ୍ମୃତି, ଶ୍ରାବଣ ଓ ପ୍ରତିବିମ୍ବ
* ସ୍ୱାତୀଲଗ୍ନ
* ଜହ୍ନରାତିର ମୁହଁ
* ଏକଲା ନଈର ଗୀତ
* ସ୍ୱାତୀ ଲଗ୍ନର (ହିନ୍ଦୀ ରୂପାନ୍ତର)

## ଶିଶୁ ସାହିତ୍ୟ (କବିତା)

* କେତେ କଥା କେତେ ଗୀତ (ଶିଶୁ ସାହିତ୍ୟ)
* ଆମେସବୁ ଟିକିଫୁଲ (ଶିଶୁ ସାହିତ୍ୟ)

## ପ୍ରବନ୍ଧ ଓ ଅନ୍ୟାନ୍ୟ

* ଥରେ ଖାଲି ଡାକଦେଲେ
* ମାନସିଂହଙ୍କ କାବ୍ୟ କୀର୍ତ୍ତି (ପ୍ରବନ୍ଧ)

# ସୂଚୀ





## ସ୍ମୃତି ତ କଦାପି ନୁହେ ଫିଙ୍ଗିବାର

—ଏକ—

ଏବୁ ସ୍ମୃତି ଶବ୍ଦଟା ମନ ଭିତରେ କେମିତି ଗୋଟାଏ ଆଚ୍ଛନ୍ନତା ସୃଷ୍ଟିକରେ । ଭଳା ଭଳା ଅନୁଭୂତି ସବୁତ ଆପେ ଆପେ ମନ ପଟକୁ ଟାଣି ହୋଇଯାଏ । ଏଇ ଭରପୂର ସଂସାର ଭିତରେ କ୍ଷଣିକ ପାଇଁ ହେଲେ ବି ମନଟା ଅଟକି ଯାଏ କେଉଁଠି ଯେମିତି । ସ୍ମୃତିମୟତାରେ ମନ ଭରିଯାଏ । ଅତୀତ ସବୁବେଳେ ସୁନ୍ଦର ମନେହୁଏ । ବର୍ତ୍ତମାନ ଯେତେ ମଧୁର ହେଲେ ବି ସେପରି ଭଲ ଲାଗେନି କାହିଁକି ? ଆଞ୍ଜୁଳାଏ ବାସ୍ନାପରି ସ୍ମୃତି ହୃଦୟ ଆଉ ମନକୁ ମହକାଇ ଦିଏ । ସ୍ମୃତିବିହ୍ୱଳ ମନ ଭିତରେ ଛୋଟ ବଡ଼ କେତେ ସ୍ମୃତି ଦାନା ବାନ୍ଧେ । କିନ୍ତୁ ଅନେକ ସମୟରେ ଏଇ ସ୍ମୃତିମୟ ଅତୀତ ଆବେଗରେ ରୂପାନ୍ତରିତ ହୋଇଯାଏ ।

ସେମିତି ମୋ ଶାନ୍ତିନିକେତନ ସ୍ମୃତି । ଜୀବନକୁ ନିର୍ମାଣ କରିବାର ଯେଉଁ ସ୍ୱପ୍ନ ମୁଁ ସେତେବେଳେ ଦେଖୁଥିଲି, ସାଧନାମୟ ଏବଂ ସଂକଳ୍ପମୟ ଜୀବନ ଭିତରେ ଶାନ୍ତିନିକେତନ ମୋ ପାଇଁ ଆଲୋକବର୍ତ୍ତିକା ହୋଇ ଯେମିତି ଆଜି ବି ମୋତେ ଆହ୍ୱାନ କରୁଛି । ତାର ସଙ୍ଗୀତଭରା ସକାଳ, ଉପାସନାମୟ ସନ୍ଧ୍ୟା ଭିତରେ ଶାନ୍ତିନିକେତନ ମୋ ମନରେ ଆଜି ବି ଜୀବନ୍ତ । ଶାନ୍ତ ସରଳ ଆରଣ୍ୟକ ପରିବେଶ ଭିତରେ ନିସର୍ଗଭରା ଟିଏ ଅଛିଏ ଶାନ୍ତିନିକେତନ । ଯାହାର ଆକାଶଭରା ଗୀତ ଭିତରେ ମୁଁ ବାରମ୍ବାର ଅଞ୍ଜଳି ଦେଉଛି ମୋର ଅତୀତକୁ । ମୋର ସୁକୁମାର ସ୍ମୃତିକୁ ।

ବର୍ଷାର ଶାନ୍ତିନିକେତନ ଅପରୂପା, ଅପୂର୍ବା, ଓଦା ଜୁଡ଼ୁବୁଡ଼ୁ ବୃଷ୍ଟିବାଣୀ ଭିତରେ ମୋ କାନରେ ଏବେ ବି ଧ୍ୱନିତ ହେଉଛି—

"ମେଘ ବଲେଛେ ଯାବ ଯାବ
ରାତ ବଲେଛେ ଯାଇ
ସାଗର ବଲେ କୁଲ ମେଲେଛେ
ଆମିତ ଆର ନାଇ"

ସଙ୍ଗୀତ ମୋ ଶୈଶବର ସହଚରୀ ଥିଲା । ଶାନ୍ତିନିକେତନର ସେହି ସାଙ୍ଗୀତିକ ପରିବେଶ ସେମିତି ମୋ ଭିତରେ ସଙ୍ଗୀତର ଝରଣା ବୁହାଇ ଦେଲା । ପାଠପଢ଼ା ବାହାରେ ରବୀନ୍ଦ୍ର ସଙ୍ଗୀତ ମୋର ପ୍ରିୟ ହୋଇ ଉଠିଲା । ଗଭୀର ସ୍ମୃତିର ସ୍ପନ୍ଦନ ଭିତରେ ଏବେ ମଧ୍ୟ ବେଳେ ବେଳେ ମୋର ସମଗ୍ର ସତ୍ତା ଆଚ୍ଛନ୍ନ ହୋଇଯାଏ । ଜ୍ୟୋତ୍ସ୍ନାଧୂଆ ଜହ୍ନରାତି କମ୍ବା ଟଙ୍ଗଶିଉଳିର ନରମ ସକାଳର ଦଳ ଦଳ ପୁଅଙ୍କର ସମ୍ମିଳିତ କଣ୍ଠର କୋରସ ଭିତରେ ଶାନ୍ତିନିକେତନ ଅଧିକ ପ୍ରାଣଚଞ୍ଚଳ ହୋଇ ଉଠୁଥିଲା ଯେମିତି । କବିଗୁରୁ ରବୀନ୍ଦ୍ରନାଥଙ୍କ ସାଧନାର ପୀଠ ଶାନ୍ତିନିକେତନ । ତାହା ଥିଲା ତାଙ୍କ ସ୍ୱପ୍ନର ସ୍ୱର୍ଗଭୂମି । ଶାନ୍ତିନିକେତନର ପାଠପଢ଼ା ସକାଳ ସାତଟାରୁ ଆରମ୍ଭ ହୋଇଥାଏ । ଖୋଲା ଆକାଶ ତଳେ ଗଛମୂଳର ବେଦୀ ଉପରେ କ୍ଲାସସବୁ ହେଉଥିଲା ସେତେବେଳେ । ସେଇ ବାଇଶ ବର୍ଷ ତଳେ ପ୍ରତ୍ୟେକ ମୁହୂର୍ତ୍ତରେ ମୋର ମନେ ହେଉଥିଲା— ସେଇ ଶାନ୍ତିନିକେତନ ବୋଧହୁଏ ରବୀନ୍ଦ୍ରନାଥଙ୍କର "ସବୁ ପାଇଛ"ର ଦେଶ । ସେଠାରେ ମନ ଆପେ ଆପେ ଉନ୍ମୁକ୍ତ ହୋଇଯାଏ ଚଢ଼େଇ ପରି । 'ତା'ର ଆକାଶଭରା କୋଲେ, ମୋଦେର୍ ଦୋଲେ ହୃଦୟ ଦୋଲେ'—ଆଶ୍ରମ ସଙ୍ଗୀତର ଏଇ ଯୋଡ଼ିଏ ଧାଡ଼ି ବଡ଼ ତାତ୍ପର୍ଯ୍ୟପୂର୍ଣ୍ଣ ମନେ ହେଉଥିଲା ସେତେବେଳେ । ସେ କଥା ଆଜି ଭାବିଲାକ୍ଷଣି ଅପୂର୍ବ ଭାବରେ ହୃଦୟ ଭରି ଉଠୁଛି । ସଙ୍ଗୀତ ଜୀବନକୁ ଭଲ ପାଇବାର ମନ୍ତ୍ରରେ ଦୀକ୍ଷିତ କରାଏ । ଜୀବନ ପ୍ରତି ଶ୍ରଦ୍ଧା ଭାବରୁ ସଙ୍ଗୀତର ସୃଷ୍ଟି ପିଲାଦିନରୁ ରବୀନ୍ଦ୍ରନାଥଙ୍କର ଯେଉଁ ଆଡ଼କୁ ପ୍ରବୃତ୍ତି ରହିଥିଲା । ତାଙ୍କର ପିତା ଦେବେନ୍ଦ୍ରନାଥ ସଙ୍ଗେ ସଙ୍ଗେ ସେହି ପ୍ରବୃତ୍ତିଗୁଡ଼ିକର ବିକାଶ ପାଇଁ ଆବଶ୍ୟକ ସୁବିଧା କରି ଦେଉଥିଲେ । ଏହିପରି ଏକ ଅନୁକୂଳ ପରିବେଶରେ ସେ ଆପଣାର ବ୍ୟକ୍ତିତ୍ୱର ପରିପୂର୍ଣ୍ଣ ବିକାଶ କରିବା ଲାଗି

ସକଳ ସୁବିଧା ଲାଭ କରିଥିଲେ । ରବୀନ୍ଦ୍ରନାଥଙ୍କ ଜୀବନ ସହିତ ଆମେ ଏ ଦେଶରେ ସାଧାରଣ ଯୁବକ ଜୀବନର କ ତୁଳନା ବା କରିପାରିବା ।
ଉପଯୁକ୍ତ ସୁବିଧା ସୁଯୋଗ ଅଭାବରୁ କେତେ ପ୍ରତିଭା ଅକାଳରେ ଲିଭି ଯାଉଛି ; ତାର ଇୟତ୍ତା ନାହିଁ ।

ମହର୍ଷି ଦେବେନ୍ଦ୍ରନାଥଙ୍କର ତପସ୍ୟା ସ୍ଥାନ ସପ୍ତପର୍ଣ୍ଣିର ମଣ୍ଡପ ନିକଟରେ । ଅଁଳା ଓ ଶାଳଗଛର ଗୁହାଇ ଯେଉଁଠି ଦୋଳିଖେଳେ ; ପୁଣି ବ୍ରାହ୍ମ ମନ୍ଦିର ନିକଟରେ ଥିବା ଶାଲ୍ ବୀଥି ଓ ଆମ୍ରକୁଞ୍ଜ ତଳେ ବି କେବେ କେବେ ଆମର ଏମ୍. ଏ. କ୍ଲାସ ହେଉଥିଲା । ସବୁ ଭିତରେ କିପରି ଏକ ନୂଆ ଜୀବନର ଝଲକ । ନୂଆ ସୃଷ୍ଟିର ସ୍ପନ୍ଦନ ମୁଁ ଅନୁଭବ କରୁଥିଲି ସେତେବେଳେ । ସେସବୁ ଆଜି ସ୍ମୃତି ଆଉ ସ୍ମୃତି ହିଁ କେବଳ ।



—ଦୁଇ—

ଭାରତବର୍ଷ ହେଉଛି ବିଶ୍ୱମାନବ ଓ ବିଶ୍ୱସଂସ୍କୃତିର ମିଳନ ଭୂମି । ପ୍ରାଚୀନ ଉପନିଷଦ ଓ ପ୍ରାଚୀନ ଭାରତୀୟ ସଂସ୍କୃତିରୁ ରବୀନ୍ଦ୍ରନାଥ ଅନେକ ପ୍ରେରଣାମୟ ଉପାଦାନ ପାଇଛନ୍ତି । ପ୍ରାଚୀନ ଶାସ୍ତ୍ର ତାଙ୍କର ଦୃଷ୍ଟି ଭିତରେ ନୂତନ ଜୀବନ-ପ୍ରେରଣା ହୋଇ ଜନ୍ମଲାଭ କରିଛି । ୧୯୦୧ ମସିହାରେ ରବୀନ୍ଦ୍ରନାଥ ଶାନ୍ତିନିକେତନରେ ଛଅଜଣ ଛାତ୍ରଙ୍କୁ ନେଇ ଗୋଟିଏ ବିଦ୍ୟାଳୟ ଆରମ୍ଭ କରିଥିଲେ । ଆପଣାର ବିଦ୍ୟାଳୟଟି ଲାଗି ରବୀନ୍ଦ୍ରନାଥଙ୍କୁ ଯେ କେତେ ବାଧାବିଘ୍ନ ଅତିକ୍ରମ କରିବାକୁ ପଡ଼ିଛି ତାହାର ସୀମା ନାହିଁ । ୧୯୨୧ ମସିହାଠାରୁ ବିଶ୍ୱଭାରତୀ ବିଶ୍ୱ-ବିଦ୍ୟାଳୟରେ ପରିଣତ ହୋଇଛି । ଭାରତୀୟ ଧର୍ମ, ଦର୍ଶନ, ଭାରତୀୟ ସାହିତ୍ୟ, ଭାରତୀୟ କଳା ଓ ଭାରତୀୟ ନୃତ୍ୟ ଓ ସଙ୍ଗୀତର ଅଧ୍ୟାପନା ଓ ଅନୁସନ୍ଧାନ ଲାଗି ବିଶ୍ୱଭାରତୀ ଭାରତବର୍ଷରେ ଏକ ଅଦ୍ୱିତୀୟ ସ୍ଥାନରେ ପରିଣତ ହୋଇପାରିଛି । କୌଣସି ଗୋଟିଏ ଧର୍ମକୁ ବଡ଼ ବୋଲି ନ କହି ମନୁଷ୍ୟର ଧର୍ମନିଷ୍ଠା ଓ ଧର୍ମ ବାସନାକୁ ହିଁ ଏଠାରେ ଉଚ୍ଚତମ ବୋଲି ସ୍ୱୀକାର କରାଯାଇଛି । ନାନା ଘୃଣା ଓ ଦ୍ୱେଷରେ ପରସ୍ପରଠାରୁ ବିମୁଖ ନ ହୋଇ ମନୁଷ୍ୟ ପରସ୍ପରର କଳା, ସାହିତ୍ୟ ଓ ସଙ୍ଗୀତ ଜରିଆରେ ପରସ୍ପରକୁ ଚିହ୍ନିବ, ପରସ୍ପରଠାରୁ ଗ୍ରହଣ କରିବ ଓ ପରସ୍ପରକୁ ଦାନ କରିବ—ଏହାହିଁ ବିଶ୍ୱଭାରତୀର ମୂଳକଥା ।

"ଦିବେ ଆର ନିବେ
ମିଲିବେ ମିଲିବେ
ଯାବେ ନା ଫିରେ
ଏଇ ଭାରତେର ମହାମାନବେର
ସାଗରତୀରେ ।"

୧୯୧୩ ମସିହାରେ ରବୀନ୍ଦ୍ରନାଥଙ୍କୁ ନୋବେଲ ପୁରସ୍କାର ଦିଆଗଲା । ଭାରତ ପରି ପରାଧୀନ ରାଜ୍ୟରେ ଏଭଳି ପ୍ରତିଭାଧାରୀ ଯେ ଜନ୍ମିଛନ୍ତି ତାହା ପୃଥିବୀବାସୀଙ୍କର ଦୃଷ୍ଟି ଆକର୍ଷଣ କଲା । ଗାନ୍ଧୀ, ରବୀନ୍ଦ୍ର-ନାଥ ଓ ଅରବିନ୍ଦ ଏଇମାନେ ତ ଏ ଦେଶର ଯଥାର୍ଥ ବାଣୀ—"ଈଶାବାସ୍ୟମିଦଂ" ମନ୍ତ୍ରଟି ହେଉଛି ଏ ଦେଶର ରାଜଯୋଗ । ଏ ସବୁଗୁଡ଼ିକ ଯେପରି ମୋ ଭିତରର ସୁପ୍ତ ଚେତନାଟିକୁ ଜଗାଇ ଦେଇ ଯାଇଛନ୍ତି । ଏଇ ଜାଗୃତି ଭିତରେ କେତେ ଆକୁଳତା, କେତେ ଆନ୍ତରିକତା ଯେ ଛପି ରହିଛି ତାର ଇୟତ୍ତା ନାହିଁ । ବିଶ୍ୱଭାରତୀର ପ୍ରତ୍ୟେକ ଗଛ, ପ୍ରତ୍ୟେକ ଫୁଲ, ନିଃଶବ୍ଦ ରହି ସବୁଗୁଡ଼ିକ ମୋ ପ୍ରାଣ ଭିତରେ ଏକ ଅପୂର୍ବ ପୁଲକ ସୃଷ୍ଟି କରୁଛି । ଏତେ ସୌନ୍ଦର୍ଯ୍ୟ, ଏତେ ଆନନ୍ଦ, ଏତେ ପ୍ରାଣପ୍ରାଚୁର୍ଯ୍ୟ ଅନ୍ୟ କେଉଁଠି ଥିବ ବୋଲି ମୁଁ କଳ୍ପନା କରିପାରୁନି ।

ରବୀନ୍ଦ୍ରନାଥଙ୍କ ଘରର ନାମ "ଉତ୍ତରାୟଣ" । ଏହି ଉତ୍ତରାୟଣ ପାଖରେ ଆଉ କେତୋଟି ଛୋଟ ଛୋଟ ଘର ପରବର୍ତ୍ତୀ ସମୟରେ କବି ତିଆରି କରିଥିଲେ । ସେଗୁଡ଼ିକର ନାମ ହେଲା "କୋଣାର୍କ", "ଉଦୟନ୍", "ଶ୍ୟାମଳୀ", "ପୁନଶ୍ଚ", "ଉଦିଚୀ" ଓ "ଚିତ୍ରଭାନୁ" । ଏହା ପୂର୍ବରୁ ଆଉ ଦୁଇଟି ଛୋଟ ଘର ସେ ତିଆରି କରିଥିଲେ । ଯାହାର ନାମ ଥିଲା "ପ୍ରାନ୍ତିକ୍ ଓ ଦେହଲୀ"—ବର୍ତ୍ତମାନ ଶାନ୍ତିନିକେତନ ପାଖରେ ରେଲୱେ ଷ୍ଟେସନ ଏହି ପ୍ରାନ୍ତିକ ନାମରେ ନାମିତ ।

"ଉଦୟନ" ଘର ଚାରିପାଖରେ ଚମତ୍କାର ପରିବେଶ, ସୂକ୍ଷ୍ମ ଶିଳ୍ପମୟ ରୁଚିର ଚୂଡ଼ାନ୍ତ ବିକାଶ ଘଟିଛି ଯେମିତି । କବି ରବୀନ୍ଦ୍ରନାଥ ତାଙ୍କ ନିଜ ରୁଚି ଅନୁସାରେ ଏହି ଘରସବୁ ତିଆରି କରିଥିଲେ । ଘର ଚାରିପାଖରେ ଲମ୍ବା ବାରଣ୍ଡା—ଚାରିପାଖ ଖୋଲା ମେଲା । ଦୂର ଦିଗ୍‌ବଳୟରୁ ଆଲୁଅର ବର୍ଣ୍ଣବିଭା ଫିଟିପଡ଼େ—ପବନର ଦୁରନ୍ତ ବାତ୍ୟାରେ ଚତୁର୍ଦ୍ଦିଗ ମହକିଯାଏ, ଦେଶବିଦେଶରୁ ଯେଉଁ ଭ୍ରମଣକାରୀ-ମାନେ, ଯେଉଁ ଗବେଷକମାନେ ଆସନ୍ତି ସେମାନେ ଏହି ଉତ୍ତରାୟଣ ଘରଗୁଡ଼ିକର କାଳଜୟୀ ସ୍ଥାପତ୍ୟର ସୌନ୍ଦର୍ଯ୍ୟରେ ମୁଗ୍ଧ ନ ହୋଇ

ଋତୁପାରମ୍ପନ । ଘର ଭିତରର ସ୍ଥାପତ୍ୟର ଡିଜାଇନ୍ ସବୁ ପ୍ରାଚ୍ୟ ଓ ପାଶ୍ଚାତ୍ୟରୁ ଅଣାଯାଇଛି । ଘରର ପ୍ରବେଶ ଦ୍ୱାରର ଖୋଲା ବାରଣ୍ଡାଟା ଠିକ୍ ଗୋଟିଏ ଷ୍ଟେଜ୍ ପରି । ଚୀନ୍ ଦେଶର "ସମର ଥିଏଟର" ଷ୍ଟେଜ୍‌ର ଅନୁକରଣ । ଘର ଭିତରେ ପଶିବାର ଯେଉଁ ଦ୍ୱାର ତାହା ମଧ୍ୟ ବିଭିନ୍ନ କାରୁକାର୍ଯ୍ୟମୟ । ସେଗୁଡ଼ିକରେ ମୋଗଲ ଶୈଳୀର ସ୍ୱାକ୍ଷର ଅଙ୍କିତ । ଦୁଇପାଖରେ ଥିବା ଖୋଲା ବାରଣ୍ଡାର ପିଲର୍‌ଗୁଡ଼ିକରେ ବୌଦ୍ଧ ସ୍ଥାପତ୍ୟର ସୁନ୍ଦର ନିଦର୍ଶନ ସୁସ୍ପଷ୍ଟ । ତା ଉପରେ ଥିବା ପ୍ୟାନେଲ୍‌ମାନ ରବୀନ୍ଦ୍ରନାଥଙ୍କ ଅଙ୍କା ଚିତ୍ରର ପ୍ରତିଲିପି ଦ୍ୱାରା ସଜ୍ଜିତ । ଘର ଭିତରେ ଏକ ପ୍ରକାଣ୍ଡ ହଲ୍, ଯାହାକି ଏକ ଚମତ୍କାର କାଠର କାରୁକାର୍ଯ୍ୟ ଦ୍ୱାରା ଚିତ୍ରମୟ । ଚାରିପାଖରେ ବସିବା ପାଇଁ ସ୍ଥାନ ଏବଂ ମଝିରେ ଫାଙ୍କା । ବିଶେଷ ବିଶେଷ ଅନୁଷ୍ଠାନ ଏଠାରେ ଅନୁଷ୍ଠିତ ହୁଏ । ଘରର ବିଭିନ୍ନ ସ୍ଥାନ ଶିଳ୍ପୀ ଅବନୀନ୍ଦ୍ର, ରବୀନ୍ଦ୍ରନାଥ, ନନ୍ଦଲାଲ ଏବଂ ପ୍ରତିମାଦେବୀ ପ୍ରଭୃତିଙ୍କ ଛବିରେ ସୁସଜ୍ଜିତ । ଚାରିଆଡ଼େ ଅପୂର୍ବ ଚିତ୍ରମୟ ପରିବେଶ । ଆକାଶ ଯେତେବେଳେ ମେଘମୟ ହୋଇଉଠେ, ମୌନ ଗମ୍ଭୀର ତପସ୍ୱୀ ପରି ରବି ଯେତେବେଳେ ଶୂନ୍‌ଶାନ୍ ହୋଇଯାଏ, ନିଶ୍ଚିତ୍ତ ଧାମିକବି ରବୀନ୍ଦ୍ରନାଥ ଆପଣା ଭିତରେ ଅତି ବେଶି ଏକୁଟିଆ ହୋଇଯାଉଥିବେ ହୁଏତ ଏବଂ କବିତା ଲେଖିଥିବେ—

ଆଷାଢ଼ ସନ୍ଧ୍ୟା ଘନାଏ

ଏଇ ଗେଲରେ ଦିନ ବାଏ

× × ×

ଏକଲା ବସେ ଘରେର କୋନେ,

କି ଭାବି ଯେ ଆପନ ମନେ—ଇତ୍ୟାଦି ।



## —ତିନ୍—

ସାରାଦିନର କ୍ଳାନ୍ତି, ସନ୍ଧ୍ୟାର ବର୍ଣ୍ଣବିଭା, ସକାଳର ଉଦୟ ସୂର୍ଯ୍ୟ, ଏ ସମସ୍ତ ବିଗତ ମୋ' ସହିତ ସବୁବେଳେ ଏକାକାର ହୋଇଯାଇଛି । ଜଗତର ଆନନ୍ଦ ଯଜ୍ଞରେ ମୁଁ ନିମନ୍ତ୍ରିତ ।

"ଜଗତେ ଆନନ୍ଦ ଯଜ୍ଞେ ଆମାର ନିମନ୍ତ୍ରଣ
ଧନ୍ୟ ହଲ ଧନ୍ୟ ହଲ ମାନବ ଜୀବନ"

ପ୍ରତ୍ୟେକ ଦିନର ସୂର୍ଯ୍ୟୋଦୟ, ସୂର୍ଯ୍ୟାସ୍ତ ଭିତରେ ସମଗ୍ର ପୃଥିବୀ ଯେତେବେଳେ ତନ୍ଦ୍ରାମଗ୍ନ, ଆକାଶ ଅନ୍ଧକାର ମଗ୍ନ, କିଏ ମୋର ବୀଣା ତାରରେ ଏପରି ଝଙ୍କାର ଦିଏ । କେଉଁ ବିପୁଳ ବାଣୀ ବ୍ୟାକୁଳ ସ୍ୱରରେ ବାଜୁଛି ଜାଣେନା; କିନ୍ତୁ ତା'ର ଗୁଞ୍ଜରଣରେ ପ୍ରାଣ ପୂରି ଉଠୁଛି । କେଉଁ ବେଦନାରେ ହୃଦୟ ଅଶ୍ରୁଧାରରେ ଭରିଯାଉଛି । ରବୀନ୍ଦ୍ରନାଥଙ୍କ ପ୍ରତ୍ୟେକ କବିତା ଏଇଭଳି ରହସ୍ୟପୂର୍ଣ୍ଣ । ରବୀନ୍ଦ୍ରନାଥ ବିଶ୍ୱ ଦେବତାଙ୍କୁ ପ୍ରଧାନତଃ ଆନନ୍ଦମୟ କରି ଦେଖିଛନ୍ତି । ତେଣୁ ସୂର୍ଯ୍ୟଙ୍କୁ ସେ ସତ୍ୟର ଆନନ୍ଦ ରୂପ ବୋଲି ବର୍ଣ୍ଣନା କରିଛନ୍ତି । ରବୀନ୍ଦ୍ରନାଥଙ୍କ କବିତା ପଢ଼ିବାବେଳେ କିମ୍ବା ରବୀନ୍ଦ୍ର ସଙ୍ଗୀତ ଶୁଣିଲା ବେଳେ କିପରି ଏକ ଅପୂର୍ବ ସ୍ନିଗ୍ଧତାରେ ମନ ଭରିଉଠେ; ଜୀବନ ମରଣର ସୀମାରେଖା ଡେଇଁଗଲା ଭଳି ଲାଗେ । ଜୀବନରେ ଏଇ ମୁଗ୍ଧ ହୋଇପିବାର ମୁହୂର୍ତ୍ତ, ଜୀବନ ଭିତରେ ଅମୃତତ୍ତ୍ୱର ସନ୍ଧାନ କରିବାର ପରମ ଲଗ୍ନ ଯେମିତି ଆଜି ମୋ' ହାତ ପାଆନ୍ତାରେ, ଜୀବନକୁ ଭଲ ପାଉଥିଲେ ବୋଲି ପ୍ରକୃତି ଭିତରେ ହଜି ଯାଉଥିଲେ ବୋଲି ସେ ଜୀବନର କବି ରବୀନ୍ଦ୍ରନାଥ । ଏହି ମଣିଷ ଭିତରେ, ଏହି ପୁଷ୍ପିତ ବନାନୀ ଭିତରେ, ବାରମ୍ବାର ଜନ୍ମଗ୍ରହଣ କରିବାର ବାସନା ଭିତରେ ତାଙ୍କର ମର୍ତ୍ତ୍ୟପ୍ରୀତି ଜାଗ୍ରତ ହୋଇ ଉଠିଥିଲା ।

"ମରିତେ ଚାହିନା ଆମି ସୁନ୍ଦର ଭୁବନେ
ମାନବେର ମାଝେ ଆମି ବାଂଚ୍‌ବାରେ ଚାଇ"

ଜୀବନ ପ୍ରତି ଏହି ଅଙ୍ଗୀକାରବଦ୍ଧତା, ଏଇ ନିବିଡ଼ ବିଶ୍ୱାସ ତାଙ୍କୁ ଏତେବଡ଼ ମହାନ କବିରେ ପରିଣତ କରିପାରିଥିଲା । ଏ ସଂସାରରେ ଏଭଳି ଲୋକ ଅଛନ୍ତି ଯେଉଁମାନେ ଭଲ ପାଇବାର ଧାରି ଧାରନ୍ତି ନାହିଁ ଅଥଚ ସୁବିଧାବାଦର କୃତ୍ରିମତା ଭିତରେ ଅସଂଖ୍ୟ ଖ୍ୟାତି ଓ ସ୍ୱୀକୃତି ଗୋଟାଇବାରେ ଲାଗି ଥାଆନ୍ତି । ଜୀବନକୁ ଭଲ ନ ପାଇଲେ, ଜୀବନ ଉପରେ ବିଶ୍ୱାସ ନଥିଲେ ଏଇ ସୃଜନଶୀଳତା କିପରି ସମ୍ଭବ ହେବ ? ଏଇ କବିତାର ମୁହୂର୍ତ୍ତ ଭିତରେ ସୃଜନାତ୍ମକ ଅନୁଭୂତି ଭିତରେ ମୁଁ ଉଦ୍‌ବୁଦ୍ଧ ହୋଇଯାଏ ବେଳେବେଳେ । ବୃହତ୍ତର ପ୍ରେରଣାର ଗ୍ରହଣଶୀଳତା ମଧ୍ୟରେ ମୁଁ ଆତ୍ମମଗ୍ନ ହୋଇଯାଏଁ ବେଳେବେଳେ । ଜୀବନ ପ୍ରତି ଏଇ ଅଙ୍ଗୀକାରବଦ୍ଧତା, ଭଲ ପାଇବା ପ୍ରତି ଏଇ ଅଙ୍ଗୀକାର-ବଦ୍ଧତାରୁ ହିଁ ତ କବିତ୍ୱର ସୃଷ୍ଟି ଆବେଗର ଶେଷ ଲୁହ ବୁନ୍ଦା ଭିତରେ । ମେଘମୟ ମୁହୂର୍ତ୍ତର ଛାଇ ଛାଇକିଆ ଆଲୋକିତ ଅନ୍ଧକାର ମଧ୍ୟରେ । ହୃଦୟର ଅତଳସ୍ପର୍ଶୀ ଆବେଗ ନିକଟରେ ନିରୁପାୟ ହୋଇଯାଏ କବି । ଶୋକ ଯନ୍ତ୍ରଣାକୁ ଆତ୍ମସ୍ଥ କରି ସେ ପ୍ରତି-ନିୟତ ସୂର୍ଯ୍ୟସମ ଉଦ୍ଭାସିତ ହୋଇ ଚାଲିଛି ଯେମିତି, ଶବ୍ଦ ଏବଂ ସଙ୍ଗୀତ ମଧ୍ୟରେ, ସ୍ୱପ୍ନାବିଷ୍ଟ ମନର ଶେଷ ପାହାଚରେ । ଚେତନାର ସମୁଦ୍ର ମଧ୍ୟରେ କବି ଅପେକ୍ଷା କରେ ଗୋଟାଏ କାଳଜୟୀ ମୁହୂର୍ତ୍ତକୁ—ତାହା ହୁଏ କବିତାର ମୁହୂର୍ତ୍ତ । ସୃଜନାତ୍ମକ ଅନୁଭବର ମୁହୂର୍ତ୍ତ । ହୁଏତ କବି ନଥିବ । ସ୍ନେହମୟ ମୁହୂର୍ତ୍ତର ଅସରନ୍ତି ସ୍ମୃତି ଆସି ହାତ ପାଆନ୍ତାରେ ଧରିଦେବ । ସେହି ସ୍ମୃତି ପୁଣି ଆତ୍ମାର ଆଲୋଡ଼ନ ମଧ୍ୟରେ ଝରାପତ୍ରର କାରୁଣ୍ୟ ଭିତରେ ଗୋଧୂଳିର ଶେଷ ଲଗ୍ନରେ ଜଳି ଉଠିବ ତାରା ହୋଇ, ଓଁକାର ଧ୍ୱନି ହୋଇ ।



# ଶାନ୍ତିନିକେତନରେ କବିତାର ମୁହୂର୍ତ୍ତ

କବିତାର ମୁହୂର୍ତ୍ତକୁ କିଏ କେତେ ଭାବରେ ବୁଝନ୍ତି । ସାରସ୍ୱତ ଅନୁଭବ, ସୃଜନାତ୍ମକ ଅନୁଭବ ମଧ୍ୟରେ ଏହି ମୁହୂର୍ତ୍ତ ସ୍ୱମହିମାରେ ମହିମାଶାନ୍ତ । ଏହି ମୁହୂର୍ତ୍ତ ମୁହୂର୍ତ୍ତର ଅନୁଭୂତି ଅନ୍ତର୍ଯ୍ୟାମୀର ଅନୁଭୂତି । ଆମ ଉପନିଷଦର କବିମାନେ ତ ଏହି କଥା କହିଛନ୍ତି । "ସିଏ ମୋ' ଆତ୍ମା ଭିତରେ, ସିଏ ଏଇ ଅନ୍ତରୀକ୍ଷରେ, ଏହି ବିଶ୍ୱରେ ।" ଏହି ଏକ କଥା ବିଶ୍ୱକବି ରବୀନ୍ଦ୍ରନାଥ ମଧ୍ୟ କହିଥିଲେ । ଉପନିଷଦର ଆନନ୍ଦ ରୂପ ମଧ୍ୟରେ କବି ମୁକ୍ତି ସନ୍ଧାନ କରିଛନ୍ତି, "ଯେଉଁଦିନ ପ୍ରେମେର ଦ୍ୱାରା ଆମାର ଚେତନା ନିଖିଳଶକ୍ତିତେ ଜାଗ୍ରତ ହୟେ, ଯାକେ ଭାଲୋବାସି, ଆର୍ ତା'ର ସଙ୍ଗେ ଦେଖାହବେ ଏଇକଥା ସ୍ମରଣ୍ ହଲେ କାଲ୍ ଯା କିଛୁ ଶ୍ରୀହୀନ୍ ଛିଲୋ ଆଜ୍ ସେଇ ସମସ୍ତ ସୁନ୍ଦର ହୟେ ଉଠେ । ପ୍ରେମେର ଦ୍ୱାରା ଚେତନା ଯେ ପୂର୍ଣ୍ଣଶକ୍ତି ଲାଭକରେ, ସେଇ ପୂର୍ଣ୍ଣତାର ଦ୍ୱାରାଇ ସେଇ ସୀମାର ମଧ୍ୟେ ଅସୀମ କେ, ରୂପେର ମଧ୍ୟେ ଅରୂପ କେ ଦେଖତେ ପାଇ" । ଜୀବନକୁ ଭଲ ନ ପାଇଲେ ବିଶ୍ୱପ୍ରକୃତିକୁ ଆପଣାର ନ କଲେ କବିତା କିପରି ସମ୍ଭବ ହେବ ? କାରଣ କବିତା ତ ଜୀବନର ଟୁକୁରାଟିଏ । ଅନନ୍ତ କାଳ ଗର୍ଭରେ ମୁହୂର୍ତ୍ତ ଜୀବନଟିଏ । ଫୁଲ ଫୁଟିବା ପରି, ବନ୍ୟ ଝରଣା ଝରିଯିବା ପରି ଏ କବିତା । କବିର ପୃଥିବୀ ବଡ଼ ବୈଚିତ୍ର୍ୟମୟ । କେତେବେଳେ ତା'ର ପ୍ରକାଶର ଗଭୀରତା ଭିତରେ ସେ ଆତ୍ମମଗ୍ନ ହୋଇଯାଏ ତ କେତେବେଳେ ତା'ର ଦିବ୍ୟଦୃଷ୍ଟି ଭବିଷ୍ୟତକୁ ସଞ୍ଚରିଯାଇ ଜୀବନାନୁଭୂତି ସହ ଏକ ସ୍ୱୟଂ ସମ୍ପୂର୍ଣ୍ଣ ସତ୍ତାରେ ପରିଣତ ହୋଇଯାଏ । ଏକ ଅଦ୍ଭୁତ ଅନ୍ତରଙ୍ଗ ଅନୁଭବ ହୃଦୟର ଅଦୃଶ୍ୟ ବେଦୀରେ ଯେମିତି ଅଭିଷିକ୍ତ ହୋଇଯାଏ ପ୍ରତିଥର, ପ୍ରତି ମୁହୂର୍ତ୍ତରେ । ଏହାର ଆବେଦନ ତେଣୁ ଚେତନା ସ୍ତରରେ, ଆତ୍ମା ସ୍ତରରେ । ଏହା ଜୀବନର ଶୋକ ସହିତ, ଆନନ୍ଦ ସହିତ ଏବଂ ମାୟା ସହିତ ଏକାକାର ହୋଇଯାଇ ଏକ ଆବେଗ ଭିତରେ କବିସତ୍ତାକୁ ମଗ୍ନ

କରିଦିଏ । ଏହି ଆତ୍ମବିସ୍ମୃତ ହେବାର ମୁହୂର୍ତ୍ତି, ଆତ୍ମମଗ୍ନ ହେବାର ମୁହୂର୍ତ୍ତି ତ ଶାନ୍ତିନିକେତନର କବିତାର ମୁହୂର୍ତ୍ତି । ରବୀନ୍ଦ୍ର ଚିତ୍ରକଳା-ଠାରୁ ଆରମ୍ଭ କରି ରବୀନ୍ଦ୍ର ସଙ୍ଗୀତ ମଧ୍ୟରେ ଏଇ କବିତାର ମୁହୂର୍ତ୍ତି ମୂର୍ତ୍ତିମନ୍ତ ହୋଇ ଉଠିଛି । ଶିଳ୍ପକଳାର ବ୍ୟାପକତା ଭିତରେ ସଙ୍ଗୀତର ସମାବେଶ ମଧ୍ୟରେ କବିତାର ଉପସ୍ଥିତି ପଡ଼ୁଛି । ସବୁ ନୀରବତା ଭିତରେ, ସବୁ ଅଶ୍ରୁକଣା ମଧ୍ୟରେ, ନିସ୍ତେଜ ସଞ୍ଜର ନିସ୍ପନ୍ଦିଆ ଆକାଶ ତଳେ କମ୍ପା ଆମ୍ବ, ମହୁଲ, ପୁଲଙ୍ଗ, ଶାଳ ଗଛ ମୂଳର ଗନ୍ଧ ଗୁମ୍ଫିତ କଣେଇମାନଙ୍କର ନିଃଶବ୍ଦ ଗୃହାଣୀ ଭିତରେ କବିତାର ବାସ୍ନା ବେଶ୍ ବାରି ହୋଇଯାଏ । ପ୍ରତ୍ୟେକ ଶିଳ୍ପୀର ସଚେତନ ମନ ଏହି ଗ୍ରୁପ୍ପାସିନ୍ଦ୍ରଗ୍ଧ ଗଛ ପତ୍ରର ବର୍ଣ୍ଣବିଭା ସହିତ ସଚେତନଭାବେ ଜଡ଼ିତ । କିନ୍ତୁ ଏହି ସ୍ଥାନର ସାଂସ୍କୃତିକ ପରମ୍ପରା ଐତିହ୍ୟ ଭିତରେ କିପରି ଏକ ଅଲଗା ଧରଣର ସ୍ୱାତନ୍ତ୍ର୍ୟ ରହିଛି; ଯାହାକି ପୃଥିବୀର ପ୍ରତ୍ୟେକ କୋଣରୁ ସଂସ୍କୃତିପ୍ରେମୀ ବ୍ୟକ୍ତିମାନେ ଆସି, ସେମାନଙ୍କର ସୃଜନଶୀଳ ଅନୁଭବ ସହିତ ଏଠାକାର କଳାତ୍ମକ ପରିବେଶକୁ ଅଧିକ ଗରିମାମୟ କରିଦିଅନ୍ତି । ଏହି ବିଶାଳ ବିଶ୍ୱ, ଆକାଶ ପରି ଗଭୀର ସମୁଦ୍ର, ଅଗଣିତ ତାରକା, ମାଟି ଓ ଧୂଳିର ପୃଥିବୀ, ବଉଳ, ମାଳତୀ ଏବଂ ମାଧବୀ କୁଞ୍ଜର କୁଟୀର ଭିତରେ କବି ରବୀନ୍ଦ୍ର ଦିନେ ହୁଏତ ସ୍ୱପ୍ନ ଦେଖିଥିବେ । ସମ୍ଭାବନା, ସ୍ୱପ୍ନ ଏବଂ ଅନୁରାଗ ଭିତରେ ସେ ସାକାର କରିବେ ତାଙ୍କ ସ୍ୱପ୍ନକୁ । ସକରୁଣ, ସ୍ବପ୍ନାଚ୍ଛନ୍ନ ପ୍ରକୃତି ଭିତରେ ସେ ସୃଷ୍ଟି କରିବେ ଅସଂଖ୍ୟ କାବ୍ୟ କୋଣାର୍କ । ମେଘ ତାହା ଦାସ ଆଉ ଧୂମଳ । ପୃଥିବୀର ବିଷଣ୍ଣତାକୁ ସେ ରୂପଦେବେ ତାଙ୍କ ଚିତ୍ରରେ, ଭାସ୍କର୍ଯ୍ୟରେ । ଚିତ୍ରଶିଳ୍ପକୁ କବି ତାଙ୍କ "ଶେଷ ଜୀବନର ପ୍ରିୟା" ବୋଲି କହିଛନ୍ତି । ଏହା ଏକ ନିଶା ପରି ତାଙ୍କ ଜୀବନ ସହିତ ଏକାକାର ହୋଇଯାଇଥିଲା । କବିଙ୍କର ଶେଷ ଜୀବନର ଶିଳ୍ପ ସୃଷ୍ଟି ପଦ୍ଧତି ସମଗ୍ର ଜୀବନ ବ୍ୟାପି ସାଧନାର ଏକ ପରିଶିଷ୍ଟ । କୈଶୋରରେ ରବୀନ୍ଦ୍ରନାଥ ଯେଉଁ ଚିତ୍ର ଚର୍ଚ୍ଚା କରୁଥିଲେ "ଜୀବନ ସ୍ମୃତିରେ" ତାହାର ସୁନ୍ଦର ବର୍ଣ୍ଣନା ମିଳେ । ସେ ଲେଖିଛନ୍ତି— "ମନେପଡ଼େ ଦ୍ୱିପ୍ରହର ସମୟରେ ଗାଲିଗ୍ଣ୍ଡ ବିଛା ଘରର ଗୋଟିଏ

କୋଣରେ ଛବିଅଙ୍କା ଖାତା ନେଇ ଛବି ଆଙ୍କୁଛି—ଯେତେବେଳେ ଅନ୍ୟ କିଛି ଭଲ ଲାଗେ ନାହିଁ, ସେତେବେଳେ ଛବି ଆଙ୍କେ । କିନ୍ତୁ ମୋର ଚିତ୍ରରେଖାର ଚିତ୍ର ରଙ୍ଗର ଚିତ୍ର—ଭାବର ଚିତ୍ର ନୁହେଁ । କଥା ଭିତରେ ଅର୍ଥ ନେବାପରି ରେଖାକୁ ଦେବାକୁ ହୁଏ ରୂପ । ଏହି ରୂପ ବିନା ବ୍ୟାଖ୍ୟାରେ ମଣିଷକୁ ଭୁଲାଇ ଦିଏ × × × ଯେପରି ସୁମଧୁର ଛନ୍ଦ ଶୁଣିଲେ ସେହି ଛନ୍ଦରେ ଗୀତ ରଚନା କରି ଗାଇବାକୁ ଇଚ୍ଛାହୁଏ । ସେହିପରି ଏହିସବୁ ଭାଷାର ଚିତ୍ର ଦେଖିଲେ ଏହାକୁ ରେଖାଚିତ୍ରରେ ଅନୁବାଦ ନ କରି ଆଙ୍କିବା ପାଇଁ ଇଚ୍ଛାହୁଏ ।" (ଲୋକ ସାହିତ୍ୟ)

ବଙ୍ଗଳାର 'ଛଡ଼ା' ପରି ରବୀନ୍ଦ୍ରନାଥଙ୍କ ଚିତ୍ରଗୁଡ଼ିକ ମଧ୍ୟରେ ବାଲ୍ୟ ସରଳତା ଲକ୍ଷ୍ୟ କରାଯାଇପାରେ । ଲୋକ ସଙ୍ଗୀତ ବା 'ଛଡ଼ା' ପରି ଏହାର ମୁଖ୍ୟ ରସ କୌତୁକ ରସ । କବି ନିଜେ ଲେଖିଛନ୍ତି— କେବଳ ଏଇ ରସ ଦ୍ୱାରା ଆକୃଷ୍ଟ ହୋଇ 'ଛଡ଼ା' ସଂଗ୍ରହରେ ପ୍ରବୃତ୍ତ ହୋଇଥିଲି ।

ଯେଉଁ ରସ ତାଙ୍କୁ 'ଛଡ଼ା' ସଂଗ୍ରହରେ ପ୍ରବୃତ୍ତ କରିଛି ସେଇ ରସର ପ୍ରେରଣାରେ ତାଙ୍କ ତୂଳୀରେ ବିଚିତ୍ର ରୂପ ରାଜ୍ୟର ସୃଷ୍ଟି । ବଙ୍ଗଳା ଲୋକସାହିତ୍ୟର ଏହି ବିଭାବ ସହିତ ରବୀନ୍ଦ୍ରନାଥଙ୍କ ଚିତ୍ରର ଯୋଗ ଯେ କେତେ ନିବିଡ଼ ତାହା ଅନୁମିତ ହୋଇଥାଏ । ଏହି ଲୋକଗୀତ ବା 'ଛଡ଼ା'ର ସୌନ୍ଦର୍ଯ୍ୟ ଓ ଆକର୍ଷଣ ବିପୁଳ । ଏହାର ଛନ୍ଦ ମାଧୁରୀ ରବୀନ୍ଦ୍ରନାଥଙ୍କୁ ମୁଗ୍ଧ କରିବା ସଙ୍ଗେ ସଙ୍ଗେ ନୂତନ ଏକ ସଙ୍ଗୀତ ଜଗତକୁ ନେଇ ଯାଇଥିଲା, 'ବ୍ରିଷ୍ଟି ପଡ଼େ ଟାପୁର୍ ଟୁପୁର୍ ନଦେ ଏଲୋ ବାନ' ତାଙ୍କୁ ଚିରଦିନ ମନ୍ତ୍ରମୁଗ୍ଧ କରି ରଖିଥିଲା । ସଙ୍ଗୀତର ଅନୁରଣନ ମଧ୍ୟରେ, ଶିଳ୍ପର ସ୍ଥାପତ୍ୟ ଭିତରେ କିପରି ଏକ ସୃଜନାତ୍ମକ ଅନୁଭବ ପ୍ରତ୍ୟେକ ମଣିଷର ମନକୁ ଚହଲାଇ ଦିଏ ।



# କବି ରବୀନ୍ଦ୍ରନାଥ ଏବଂ ବାଉଲ୍ ଗାନ

ସଂସ୍କୃତିର ଯଦି ବାସ୍ନା ଥାଏ, ସଂସ୍କୃତି ଭିତରେ ବିଶେଷର ଦେବାପାଇଁ ଯଦି କିଛି ମନଛୁଆଁ ମହକ ଥାଏ ତେବେ ସେ ମହକ ମାଳତୀ ଏବଂ ମହୁଲ ଫୁଲର ମିଶାମିଶି ମହକ । ସେହି ମହୁଲ ଫୁଲର ମହକ ସହିତ, ସେହି ମାଳତୀ ଜୁଇ ହେନାର ମହକ ସହିତ ଶାନ୍ତିନିକେତନର ଅନ୍ତର୍ଜଗତ ଯେମିତି ଛନ୍ଦବଦ୍ଧ ଭାବରେ ସୁବାସିତ ହୋଇଉଠେ । ପ୍ରକୃତି ଭିତରେ, ସାଧାରଣ ଜୀବନ ଭିତରେ କବି ରବୀନ୍ଦ୍ରନାଥ ସେପରି ଲୋକସଙ୍ଗୀତର, ଲୋକ ସଂସ୍କୃତିର ଏକ ଅପୂର୍ବ ସମନ୍ୱୟ ଘଟାଇ ପାରିଥିଲେ । କବି ରବୀନ୍ଦ୍ରନାଥ ଭାରତର ବୃହତ୍ତମ ସହରରେ ଜନ୍ମ ହୋଇଥିଲେ ଓ ବଢ଼ିଥିଲେ । ମାତ୍ର ତାଙ୍କର ପଲ୍ଲୀ ପ୍ରତି ସବୁଠାରୁ ବେଶୀ ଶ୍ରଦ୍ଧା ଥିଲା । ରବୀନ୍ଦ୍ରନାଥ ଜାଣିଥିଲେ ଲୋକଗୀତର ସଂଗ୍ରହ ଓ ସଂରକ୍ଷଣ ଆମ ସଂସ୍କୃତିକୁ ସୁଦୃଢ଼ ଓ ବଳଶାଳୀ କରିପାରିବ । ଏହି ଗ୍ରାମୀଣ ଜନସାଧାରଣ ଅତୀତ ସହିତ ବର୍ତ୍ତମାନର, ଆମ ସହିତ ଆମ ପୂର୍ବ ପୁରୁଷଙ୍କ ଧର୍ମ ଧାରଣା ଓ ବିଶ୍ୱାସର ଯୋଗସୂତ୍ର । ରବୀନ୍ଦ୍ର-ନାଥ ବୁଝୁଥିଲେ ସାମାଜିକ, ଐତିହାସିକ, ନୃତାତ୍ତ୍ୱିକ ଓ ଭାଷାତାତ୍ତ୍ୱିକ ଆଦି ନାନା ଦୃଷ୍ଟିକୋଣରୁ ସଫଳଭାବେ ଲୋକସାହିତ୍ୟକୁ ଆଲୋଚନା କରାଯାଇପାରେ ।

କିନ୍ତୁ ସେ ଗବେଷକ ବା ସମାଲୋଚକ ଦୃଷ୍ଟିରେ ପଲ୍ଲୀସାହିତ୍ୟକୁ ବା ଲୋକସାହିତ୍ୟକୁ ଦେଖୁ ନ ଥିଲେ । ଅତି ନିବିଡ଼ ଭାବରେ ସେ ଲୋକସଙ୍ଗୀତକୁ ଭଲ ପାଉଥିଲେ ଓ ଏଥିରୁ ଆନନ୍ଦ ଉପଲବ୍ଧି କରୁଥିଲେ । ଲୋକସଙ୍ଗୀତର ଅନ୍ତର୍ନିହିତ ସୌନ୍ଦର୍ଯ୍ୟ ସେ ଉଦ୍‌ଘାଟନ କରିଛନ୍ତି । କବି ରବୀନ୍ଦ୍ର ଜୀବନର ପ୍ରାକ୍‌କାଳରେ ଉପନିଷଦ କିମ୍ବା ବିଦେଶୀ ସାହିତ୍ୟର କୌଣସି ପ୍ରଭାବରେ ପ୍ରଭାବିତ ହୋଇନାହାନ୍ତି । ଉନ୍ମୁକ୍ତ ମନ ନେଇ ଯେତେବେଳେ ସେ ପୃଥିବୀ ପ୍ରତି ଦୃଷ୍ଟି ଫେରାଇଛନ୍ତି, ସେତେବେଳେ ତାଙ୍କ ମନକୁ ଗୋଟାଏ ଚେତନା ଆବୋରି ବସିଛି ।

ସମଗ୍ର ଜୀବନ ଧରି ସେହି ଚେତନା ଦ୍ୱାରା ସେ ଉଦ୍‌ବୃଦ୍ଧ ହୋଇ ରହିଛନ୍ତି । ଯେଉଁ ଚେତନାର ସଙ୍ଗିଣୀ ଲୋକଜୀବନରୁ ସ୍ପଷ୍ଟ, ତାର ଅନୁରଣନ ସେ ଆପଣା ହୃଦୟରେ ଅନୁଭବ କରିଥିଲେ । ସେହି ସ୍ପନ୍ଦନ ସମଗ୍ର ଜୀବନ ଧରି ତାଙ୍କ ହୃଦୟକୁ ଆଦୋଳିତ କରିଥିଲା । ତାହା ହେଉଛି ବଙ୍ଗଳାର "ବାଉଲ୍ ଗାନ୍" । ଏହି "ବାଉଲ୍ ଗାନ୍" ସମ୍ପର୍କରେ ସେ ଅତି ଆବେଗପୂର୍ଣ୍ଣ ଭାବରେ ସ୍ୱୀକାର କରିଛନ୍ତି ଯେ, ବହୁଦିନ ଧରି ଅନ୍ୟଠାରୁ ବଇଁଶୀଟିଏ ଧାରି ଆଣି ଯେଉଁ ମୂର୍ଚ୍ଛନା ସେ ସେଥିରେ ସୃଷ୍ଟି କରୁଥିଲେ ସେଥିରେ ସେ ସମ୍ପୂର୍ଣ୍ଣ ଭାବରେ ସ୍ୱର ମାଧୁର୍ଯ୍ୟ ଜାଗ୍ରତ କରିପାରୁ ନ ଥିଲେ । ଯାହା ସେ ବଜାଇବାକୁ ଚାହୁଁଥିଲେ ତାହା ଯେମିତି ଖାପଛଡ଼ା ହୋଇଯାଉଥିଲା । ଆଶ୍ଚର୍ଯ୍ୟ ହୋଇ ସେ ନିଜକୁ ପଚାରିଛନ୍ତି, ତାହା କଣ ସେ ବଂଶୀର ଦୋଷ ନା ତାଙ୍କର ଅସାମର୍ଥ୍ୟ । ଅତି ବ୍ୟାକୁଳ ଭାବରେ ସେ ଖୋଜି ଖୋଜି ଦେଖିଲେ ଆପଣା ହୃଦୟ ଭିତରେ ଯେମିତି ଗୋଟିଏ ବାଦ୍ୟ ରହିଛି ଯାହାର ସନ୍ଧାନ ସେ ଏତେଦିନ ଧରି ପାଇ ନ ଥିଲେ । ଏକାବେଳକେ ସବୁ ସ୍ୱର ଯେମିତି ତାଙ୍କ ମନ ଭିତରେ ସେହି ମୁହୂର୍ତ୍ତରେ ବାଜି ଉଠିଲା ଏବଂ ତାହା ଆତ୍ମପ୍ରକାଶ କଲା "ବାଉଲ୍‌ର ସଙ୍ଗୀତ" ନେଇ ।

ରବୀନ୍ଦ୍ରନାଥଙ୍କର ଜୀବନରୁ ଏହା ଗମ୍ଭୀର ଭାବରେ ଅନୁଧ୍ୟାନର ବିଷୟ । ଲୋକସଙ୍ଗୀତରୁ, ବାଉଲ୍‌ଗାନ୍‌ରୁ ସେ ନିଜ ହୃଦୟ ଭିତରେ ଭାବ ଓ ଭାଷାର ପ୍ରଥମ ସନ୍ଧାନ ପାଇଲେ ବୋଲି ଉଲ୍ଲେଖ କରିଛନ୍ତି । ତାଙ୍କ କାବ୍ୟ ସାଧନାର ମୂଳସୂତ୍ର ଯେମିତି ସେ ଲୋକସଙ୍ଗୀତ ଭିତରୁ ଖୋଜି ପାଇଛନ୍ତି । ତାଙ୍କ ସାଧନାମୟ ଜୀବନର ପ୍ରାରମ୍ଭରୁ ହିଁ ସେ ଏହି ଅନନ୍ୟ ଅନୁଭୂତି ଲାଭ କରିଛନ୍ତି । ବାଲ୍ମୀକି ଯେପରି ତାଙ୍କର ଆଦିଶ୍ଳୋକ ଭିତରେ ଆତ୍ମମଗ୍ନ ହୋଇ ଉଠିଥିଲେ ଠିକ୍ ସେହିପରି ରବୀନ୍ଦ୍ରନାଥ "ବାଉଲ୍ ଗାନ" ଭିତରେ ବିଶ୍ୱପ୍ରେମର ଚେତନା ଉପଲବ୍ଧି କରିଥିଲେ । ବିଶ୍ୱପ୍ରେମର ଚେତନା ଯେ ଆମ ଭାରତବର୍ଷର ବାଉଲ୍-ମାନଙ୍କ ମୁଖରେ ଦିନେ ପ୍ରକାଶିତ ହୋଇଥିଲା ତାହା ସେ ଗମ୍ଭୀର ଭାବରେ ଲକ୍ଷ୍ୟ କରିଥିଲେ । ଜୀବନର ପ୍ରାରମ୍ଭରୁ ବାଉଲ୍‌ମାନଙ୍କ ମୁଖରୁ ସେ ଯେଉଁ କଥାର ସନ୍ଧାନ ପାଇଥିଲେ ପରବର୍ତ୍ତୀ ସମୟରେ ଉପନିଷଦ

ଭିତରୁ ତାହାର ସମର୍ଥନ ପାଇ ସେ ଅଭିଭୂତ ହୋଇଯାଇଥିଲେ । ବାଉଲ୍ ଗାନ ଭିତର ଦେଇ ସେ ଭାରତୀୟ ଉପନିଷଦକୁ ଦେଖିଛନ୍ତି । ସେ କହିଛନ୍ତି—ମୋର ମନେଅଛି ସେତେବେଳେ ମୋର ଅଳ୍ପ ବୟସ । ସିଆଲ୍ଦା ଅଞ୍ଚଳର ଗୋଟିଏ ବାଉଲ୍ କଲିକତାରେ ଏକତାର ବଜାଇ ଗାଉଥିଲା—

"କୋଥାଏ ପାବ ତାରେ
ଆମାର ମନେର ମାନୁଷ ଯେରେ
ହାରାୟେ ସେଇ ମାନୁଷେ
ତାର ଉଦ୍ଦେଶେ
ଦେଶ ବିଦେଶେ ବେଡ଼ାଇ ଘୁରେ ।"

ଏହାର କଥା ଅତି ସରଳ କିନ୍ତୁ ଭାବ ଅପୂର୍ବ ଜ୍ୟୋତିରେ ଉଜ୍ଜ୍ୱଳ । ଏହି କଥାଟି ମଧ୍ୟ ଉପନିଷଦରେ ଶୁଣାଯାଏ । "ତଂ ବେଦ୍ୟଂ ପୁରୁଷଂ ବେଦ ମା ବୋ ମୃତ୍ୟୁଃ ପରିବ୍ୟଥାଃ ।" ରବୀନ୍ଦ୍ରନାଥଙ୍କ ବାଉଲ୍ ସଙ୍ଗୀତ ପ୍ରୀତି ସର୍ବଜନବିଦିତ । ସେ ନିଜ ଦର୍ଶନର ପୁଷ୍ଟି ଲାଗି ସେମାନଙ୍କ ପାଖରୁ ପ୍ରେରଣା ଲାଭ କରୁଥିଲେ । ତାଙ୍କର କେତେକ ଗୀତ ବାଉଲ ଗୀତ ଭଙ୍ଗୀରେ ରଚିତ । ପଲ୍ଲୀଗୀତି ଛନ୍ଦ ମଧ୍ୟ ତାଙ୍କୁ ବହୁ ପରିମାଣରେ ଅନୁପ୍ରାଣିତ କରିଥିଲା ।

ବଙ୍ଗଳାର "ବାଉଲ୍ ଗାନ୍" ପରି ଆମ ଓଡ଼ିଶାରେ କେତେକ ଗୀତ ପ୍ରଚୁର ପରିମାଣରେ ରହିଛି । କିନ୍ତୁ ସେଗୁଡ଼ିକର ସଂଗ୍ରହ ଏବଂ ସଂରକ୍ଷଣ ଅଭାବରୁ ତାହା ଆଜି ବିସ୍ମୃତ ପ୍ରାୟ ଅବସ୍ଥାରେ ପଡ଼ିଛି । ବହୁବର୍ଷ ଧରି ବିଶ୍ୱଭାରତୀରେ ଲୋକସାହିତ୍ୟ ଏକ ସ୍ୱତନ୍ତ୍ର ପତ୍ର ଭାବରେ ଓଡ଼ିଆ ଏମ୍. ଏ. ଶ୍ରେଣୀରେ ପଢ଼ା ହେଉଥିବାବେଳେ ଉତ୍କଳ ବିଶ୍ୱ-ବିଦ୍ୟାଳୟରୁ ତାହାକୁ ଉଠାଇ ଦିଆଯାଇଛି । ତାହାଦ୍ୱାରା ଯେ କେବଳ ଆମେ ପରୋକ୍ଷରେ ଆମ ଲୋକସଂସ୍କୃତି ପ୍ରତି, ଲୋକ ପରମ୍ପରା ପ୍ରତି ଅବିଚାର କରୁଛୁ ତାହା ସମସ୍ତେ ସ୍ୱୀକାର କରିବେ । ରବୀନ୍ଦ୍ରନାଥଙ୍କ ଆଦର୍ଶ ଏ ଦିଗରେ ସମସ୍ତଙ୍କ ପଥପ୍ରଦର୍ଶକ ହେଉ ।

●

# ବସନ୍ତର ବୈତାଳିକ ଭିତରେ
# ଉତ୍ସବ ମୁଖର ଶାନ୍ତିନିକେତନ

ଉତ୍ସବର ଦିନମାନଙ୍କରେ ଶାନ୍ତିନିକେତନ ଅପୂର୍ବ, ଅପରୂପା । ବାର ମାସରେ ତେର ପର୍ବ ଯେମିତି ଏହାର ବୈଶିଷ୍ଟ୍ୟ । ଏହା ଅପ୍ରାସଙ୍ଗିକ କିମ୍ବା ଅହେତୁକ ନୁହେଁ । ପ୍ରାତ୍ୟହିକ ଜୀବନର ଧରାବନ୍ଧା ନିୟମ ଭିତରେ ମଣିଷର ନିସ୍ତେଜ ମନକୁ ଅଦ୍ଭୁତ ଭାବରେ ଭାବମୟ, ଆବେଗମୟ କରିଦିଏ ଏହି ସବୁ ଉତ୍ସବ ଗୁଡ଼ିକ ।

ବିଭିନ୍ନ ଋତୁରେ ବିଭିନ୍ନ ଉତ୍ସବ ଶାନ୍ତିନିକେତନରେ ପାଳିତ ହୋଇଥାଏ । "ବର୍ଷା ମଙ୍ଗଳ" 'ଶାରଦୋତ୍ସବ', 'ନବାନ୍ନ', 'ବସନ୍ତୋତ୍ସବ', 'ବୃକ୍ଷ ରୋପଣ', 'ହଳକର୍ଷଣ' ପ୍ରଭୃତି ଅନ୍ୟତମ । ଏହି ସବୁ ଉତ୍ସବର ସମାରୋହ ମଧ୍ୟ ଦେଇ ପ୍ରକୃତି ଓ ମଣିଷ ଭିତରେ ସମ୍ପର୍କର ରାଖୀବନ୍ଧନ ସମ୍ଭବ ହୋଇ ପାରିବ, ଏହା ରବୀନ୍ଦ୍ରନାଥ ବିଶ୍ୱାସ କରୁଥିଲେ । ଏହି ଉତ୍ସବ ସବୁ ପ୍ରକୃତି ଅଭିମୁଖୀ । ଏହାକୁ ବିଶ୍ଳେଷଣ କଲେ ଜଣାଯାଏ କବିଗୁରୁ ରବୀନ୍ଦ୍ରନାଥଙ୍କ ଜୀବନ ସହିତ ଏହି ପ୍ରକୃତି ଯେପରି ଓତଃପ୍ରୋତ ଭାବରେ ଜଡ଼ିତ । ତାଙ୍କ ଜୀବନ ସହିତ ସମାନ୍ତରାଳ ଭାବରେ ଶାନ୍ତିନିକେତନର ଜୀବନ ପ୍ରବାହିତ । ଗୋଟିଏ ସ୍ରୋତର ଦୁଇଟି ତଟରେଖା । ପ୍ରକୃତି ଭିତରେ ମନୁଷ୍ୟ ଏବଂ ଈଶ୍ୱରର ସମନ୍ୱୟ ସେ ଉପଲବ୍ଧି କରିଛନ୍ତି । ତାଙ୍କର ଅଧିକାଂଶ କାବ୍ୟ ଏବଂ ସଙ୍ଗୀତ ଏହି ସମନ୍ୱୟର ସାକ୍ଷ୍ୟ ବହନ କରିଛି । ତାଙ୍କ କୈଶୋରର ପ୍ରକୃତି ପ୍ରୀତି ଜୀବନର ଶେଷ ପର୍ଯ୍ୟାୟରେ ଗଭୀରତର ଅର୍ଥଲାଭ କରିଛି । ଅବଶ୍ୟ ଏହାର ପରିଣତି ତାଙ୍କ କାବ୍ୟ କବିତାରେ ଅନୁଧ୍ୟାନ କରାଯାଇଥାଏ । କିନ୍ତୁ ଏହି ଅନୁଧ୍ୟାନର ପ୍ରତ୍ୟକ୍ଷ କ୍ଷେତ୍ର 'ଶାନ୍ତିନିକେତନ' । ଶାନ୍ତି-ନିକେତନର ଋତୁ ଉତ୍ସବର ବହିଃପ୍ରକାଶ ଗୋଟିଏ ଅର୍ଥରେ କବି ଜୀବନର ପ୍ରକୃତି ସହିତ ଅନ୍ତରଙ୍ଗ ମିଳନର ବହିଃପ୍ରକାଶ ମାତ୍ର । ଏହି

ଦିଗରୁ ବିଗ୍ଭର କଲେ ରବୀନ୍ଦ୍ରନାଥଙ୍କ ଧର୍ମ ଗୋଟାଏ ପ୍ରକାର ଆଧ୍ୟାତ୍ମିକ ପ୍ରକୃତିବାଦ ଉପରେ ପର୍ଯ୍ୟବେଶିତ ।

ଶାନ୍ତିନିକେତନରେ ଆଜି ଏକପ୍ରକାର ଉତ୍ସବ ଅନୁଷ୍ଠିତ ହୋଇଥାଏ । ତାହା ସମ୍ପୂର୍ଣ୍ଣଭାବରେ ମାନବ ସମ୍ପର୍କୀତ । ସେଗୁଡ଼ିକ ଭିତରେ 'ପୌଷ ଉତ୍ସବ', 'ମହର୍ଷିଙ୍କ ଦୀକ୍ଷା', ଆଶ୍ରମ ପ୍ରତିଷ୍ଠାର ବାର୍ଷିକୀ ଅନ୍ୟତମ । 'ଆନନ୍ଦ ବଜାର' ନାମରେ ଗୋଟିଏ ମେଳା ଏଠାରେ ଅନୁଷ୍ଠିତ ହୋଇଥାଏ । ଏହା ସାଧାରଣତଃ ଦୁର୍ଗାପୂଜା ଛୁଟି ପୂର୍ବରୁ ପାଳିତ ହୁଏ । ସମସ୍ତ ଶାନ୍ତିନିକେତନ ସଜ୍ଜିତ ହୋଇଉଠେ । ଏଥିରେ ଶାନ୍ତିନିକେତନର ଛାତ୍ର-ଛାତ୍ରୀମାନେ ବିଭିନ୍ନ ଦୋକାନ ଖୋଲନ୍ତି । ସେମାନେ ହିଁ ଅନ୍ତି କ୍ରେତା, ସେମାନେ ହିଁ ବିକ୍ରେତା । ଅସୀମ ଉନ୍ମାଦନା ଭିତରେ 'ଆନନ୍ଦ ବଜାର' ଆରମ୍ଭ ହୁଏ । ଏହା ସାଧାରଣତଃ ସେହିଦିନ ଆରମ୍ଭ ହୋଇ ସେହିଦିନ ଶେଷ ହୁଏ । ପୂଜା ଛୁଟି ପୂର୍ବରୁ ଏହି ଉତ୍ସବମୁଖର ଶାନ୍ତିନିକେତନ ଖୁବ୍ ଆକର୍ଷଣୀୟ ମନେହୁଏ । ପୂଜା ଛୁଟିରେ ଘରକୁ ଫେରିବାର ଉତ୍ସାହକୁ ଏହି ମେଳା ଯେପରି ଦ୍ୱିଗୁଣିତ କରିଦିଏ । ଶାରଦୀୟ ଶାନ୍ତିନିକେତନର ଏହି ଫୁଲ ଫୁଟା ସମାରୋହ ଭିତରେ ପ୍ରତ୍ୟେକ ମୁହୂର୍ତ୍ତ ଅବିସ୍ମରଣୀୟ ।

ଫାଲ୍‌ଗୁନ ମାସରେ ବସନ୍ତୋତ୍ସବ । ଆମର 'ହୋଲି' ଦିନକୁ ହିଁ ସେମାନେ ବସନ୍ତ ଉତ୍ସବ ଭାବରେ ପାଳନ କରନ୍ତି । ଏହି ବସନ୍ତ ଉତ୍ସବର ବହୁ ଆଗରୁ 'ଆମ୍ରକୁଞ୍ଜ'ର ସଭାସ୍ଥଳ, ବାଟଘାଟ, ସବୁକୁ ଲିପାପୋଛା କରାଯାଇଥାଏ । କଳା ଭବନର ଝିଅମାନେ ଏବଂ ପୁଅମାନେ ଅଙ୍କାଅଙ୍କିରେ ଧୂରୀଣ ସେମାନେ ସମ୍ମିଳିତ ଭାବରେ 'ଆଲପନା'ମୟ କରିଦିଅନ୍ତି ସେ ସ୍ଥାନକୁ । ବସନ୍ତ ଆସିବ । ତାକୁ ସ୍ୱାଗତ କରିବା ପାଇଁ ଏହିସବୁ କଳାର ପରିକଳ୍ପନା । ଆମ୍ରକୁଞ୍ଜର ପ୍ରତ୍ୟେକ ଶାଖାରେ କୋଇଲି ଏବଂ ହଳଦୀବସନ୍ତ ମୁଖର ହୋଇ ଉଠନ୍ତି । ସେଦିନ ଶାନ୍ତିନିକେତନର ପ୍ରତ୍ୟେକ ଛାତ୍ରଛାତ୍ରୀ ବାସନ୍ତୀ ରଙ୍ଗର ବସ୍ତ୍ରରେ ଅପୂର୍ବ ଦେଖାଯାନ୍ତି । ସତେ ଯେମିତି ପୃଥିବୀର ସବୁ ହଳଦୀବସନ୍ତ ଶାନ୍ତି-ନିକେତନକୁ ଉଡ଼ି ଆସିଛନ୍ତି ବସନ୍ତର ସ୍ୱାଗତ କରିବା ପାଇଁ । ଏହି

ଉତ୍ସବ ଖୋଲ ଆକାଶ ତଳର ଉତ୍ସବ । ନୃତ୍ୟରତା ଛାତ୍ରୀମାନଙ୍କର ନୃତ୍ୟର ତାଳେ ତାଳେ, ରବୀନ୍ଦ୍ର ସଙ୍ଗୀତର ଉଚ୍ଛ୍ୱାସ ଭିତରେ, ସୁଗନ୍ଧିତ ଅମ୍ବରର ପ୍ରୀତିମୟ ପରିବେଶ ହୃଦୟକୁ ଅଭିଭୂତ କରିଦିଏ ।

'ଆଜ୍ ବସନ୍ତ ଜାଗ୍ରତ ଦ୍ୱାରେ
ତବ ଅବଗୁଣ୍ଠିତ କୁଣ୍ଠିତ ଜୀବନେ
କରନା ବିଡ଼ମ୍ବିତ ତାରେ' ।

(ଏତେଦିନ ପରେ ବସନ୍ତ ଆସିଛି, ମନ ପ୍ରାଣ ଦେଇ ତାକୁ ଅନୁଭବ କର । ହେ ବିଡ଼ମ୍ବିତ ନ ହେଉ) ।

ଜୀବନର ଅନେକ ଦ୍ୱିଧାଗ୍ରସ୍ତ ମୁହୂର୍ତ୍ତକୁ ମୁଁ ମନେରଖି ପାରି ନାହିଁ । କିନ୍ତୁ ଶାନ୍ତିନିକେତନର ସେଇ ଦୁର୍ଲଭ ଦେବ ମୁହୂର୍ତ୍ତ ମୋ' ସ୍ମୃତି ଭିତରେ ସଞ୍ଚିତ ହୋଇ ରହିଛି । ସେହି ମହାତୀର୍ଥର ସ୍ମୃତି ଜୀବନ ବ୍ୟାପି ମୋତେ ଆଚ୍ଛନ୍ନ କରିବ । ମହାପ୍ରାଣର ପ୍ରାଙ୍ଗଣରେ ଆତ୍ମଦାନର ମହୋତ୍ସବ ଲାଗି ରହିଛି । ମୋ' ନିଜକୁ ଠିକ୍ ନପାରିଟିଏ ପରି ତା'ର ଭିତରେ ମିଶାଇଦେବା ପାଇଁ ଆପଣାର ଶଯ୍ୟା ରଚନା କରି ଚାଲିଛି ।



## 'ଜଗତେ ହଜେନା କିଛି, ହଜେ ଜୀବନେ''

ଜୀବନର ସ୍ପନ୍ଦନ ଭିତରେ ଅପାସୋସ ସଙ୍ଗୀତର ଆବେଗ, ଅବସୋସର ଅସ୍ମା ମଧ୍ୟରେ, ଗଭୀର ଅନୁଭବର ଶିଳାଲେଖ ଭିତରେ କେତେ କଥା ଯେ ଆତ୍ମଗୋପନ କରି ରହିଛି ତାହା ଭାବିଲେ ବିସ୍ମୟରେ ମନ ବୁଡ଼ିଯାଏ । କବି ଅନ୍ନଦାଶଙ୍କର ଥରେ କହିଥିଲେ—

''ଜଗତେ ହଜେନା କିଛି ହଜେ ଜୀବନେ
ବାହାରେ ବେଦନା ନାହିଁ ବେଦନା ମନେ''—

ମନର ଏହି ବିହ୍ୱଳତା, ଆବେଗ ପ୍ରବଣତା, କବିତାର ବାଷ୍ପରେ ସ୍ଫୁରିତ ହେଉଥିବା କବି ଠିକ୍ କଥା ଲେଖିଥିଲେ ସେଦିନ । କବି ଅନ୍ନଦାଶଙ୍କର ରାୟ ମଧ୍ୟ ଶାନ୍ତିନିକେତନର ଆତ୍ମା ସହିତ ଏକାତ୍ମ ହୋଇଯାଇଥିଲେ ଦିନେ । ଏବେ ମଧ୍ୟ ତାଙ୍କର ଛୋଟ ଘର ଖଣ୍ଡିଏ ସେଠାରେ ଅଛି । ଶାନ୍ତିନିକେତନର ଆକାଶଭରା କୋଳ ଭିତରେ ସେ ଭାବିଥିଲେ ମବୁଧନ ପାଇଁ ବନ୍ଦୀ ହୋଇ ରହିଯିବା ପାଇଁ; କିନ୍ତୁ ସିନ୍ଧୁ ମେହୋଟ୍ଟର ତାଙ୍କର ବିଦେଶିନୀ ପତ୍ନୀ ହୁଏତ ଖୋଇଆ ଗୁହ୍ନିଲେନି । ସେଥିପାଇଁ ସେ ଏବେ କଲିକତାରେ । ଅନ୍ନଦାଶଙ୍କର ରାୟ ପ୍ରଥମେ ଜଣେ କବି ତା'ପରେ ସେ ବଙ୍ଗାଳୀ । ଏହା ତାଙ୍କର ଏକ ଆକସ୍ମିକ ପରିଚୟ ମାତ୍ର । ସୃଜନମୟ ଜୀବନ, ସୃଜନମୟ ଅବଦାନ ହେଉଛି ତାଙ୍କର ଅସଲ ପରିଚୟ । ଯେପରି ରବୀନ୍ଦ୍ରନାଥଙ୍କର ସବୁଠାରୁ ବଡ଼ ପରିଚୟ ହେଉଛି ତାଙ୍କର ସର୍ବଭାରତୀୟ ଦୃଷ୍ଟି । ଭାରତର ସଂସ୍କୃତିରେ ସର୍ବଭାରତୀୟ ଓ ସର୍ବମାନବୀୟ ଦୃଷ୍ଟି ଭିତରେ କୌଣସି ଅସଙ୍ଗତି ନାହିଁ । କାରଣ ଭାରତର ସଂସ୍କୃତି କଦାପି ଆପଣାକୁ ଏକ ଭୌଗୋଳିକ ସୀମା ଭିତରେ କ୍ଷୁଣ୍ଣ କରିଦେଇନାହିଁ । ଏ ଦେଶର ଧର୍ମଶାସ୍ତ୍ରରେ ଯେଉଁ ଉପାସନା ଓ ଉପଲବ୍ଧିର ଚର୍ଚ୍ଚା ହୋଇଛି ସେଥିରେ କୌଣସି

ପ୍ରକାର ଖଣ୍ଡିତତାର ଗନ୍ଧ ନାହିଁ । ଆମ ଦେଶର ଉପନିଷଦରେ ସବୁ ଦେବତା ଓ ପ୍ରତିମାକୁ ପାରହୋଇ ଭୂମା ବା ସମଗ୍ରତାର ସ୍ତୁତି ଗାନ କରାଯାଇଛି । ଅଳ୍ପରେ ନୁହେଁ କେବଳ ଭୂମାରେ ହିଁ ସୁଖ ନିହିତ ରହିଛି । ଏହା ହିଁ ହେଉଛି ଉପନିଷଦର ଉକ୍ତି । ରବୀନ୍ଦ୍ରନାଥଙ୍କ ମଧ୍ୟରେ ଆମେ ସବୁଠାରେ ଏହି ଦୃଷ୍ଟି ହିଁ ଦେଖିବାକୁ ପାଇବା । ଭାରତବର୍ଷର ବନ୍ଦନା କରିବାକୁ ଯାଇ ସେ ସଂସାରର ଅନ୍ୟ ସମସ୍ତ ଦେଶଠାରୁ ଭାରତବର୍ଷକୁ ବଡ଼ ବୋଲି ଦେଖାଇବାର କୌଣସି ଇଙ୍ଗିତ ଦେଇ ନାହାନ୍ତି । ଭାରତବର୍ଷ ହେଉଛି ବିଶ୍ୱମାନବ ଓ ବିଶ୍ୱସଂସ୍କୃତିର ମିଳନଭୂମି । ଶାନ୍ତିନିକେତନ କେବଳ ବଙ୍ଗଳାର ସମ୍ପତ୍ତି ନୁହେଁ । ଯିଏ ରବୀନ୍ଦ୍ରନାଥଙ୍କ ପ୍ରତିଭାକୁ ବୁଝିବାଲାଗି ଚେଷ୍ଟା କରୁଛି, ସମଗ୍ର ମାନବ ସଂସ୍କୃତିର ବହୁ ବିଭିନ୍ନତା ସତ୍ତ୍ୱେ ତଥାପି ଐକ୍ୟ ସୂତ୍ରଟି ଖୋଜିବାକୁ ଯିଏ ଈଶ୍ୱରୀୟ ଆଗ୍ରହ ନେଇ ବାହାରିଛି, ଶାନ୍ତିନିକେତନ ମଧ୍ୟ ତାହାର ସମ୍ପତ୍ତି । ସେ ଓଡ଼ିଶାରୁ ଆସିଥାଉ ବା ଆସାମରୁ ଆସିଥାଉ ମିଶରରୁ ଆସିଥାଉ ବା ମସ୍କୋରୁ ଆସିଥାଉ ବିକାରମୁକ୍ତ ମନନେଇ ଆସିଥିଲେ ତା'ପାଇଁ ମଧ୍ୟ ଶାନ୍ତିନିକେତନର ଦ୍ୱାର ସର୍ବଦା ମୁକ୍ତ ହୋଇ ରହିଛି । ସବୁଠାରୁ ଆଶ୍ଚର୍ଯ୍ୟର କଥା ଏହି ଯେ ରବୀନ୍ଦ୍ରନାଥ କୌଣସିଠାରେ ଅଟକି ଯାଇ ନାହାନ୍ତି । ତାଙ୍କର ଯେପରି ପଥ ଚାଲିବାର ବିରାମ ନାହିଁ । ସେ ହେଉଛନ୍ତି 'ପାନ୍ଥ ଗିନେର୍ ସଖା' । ଝଞ୍ଜା କ୍ଷୁବ୍ଧ ଜୀବନରେ ବ୍ୟସ୍ତ ହୋଇ ସେ କେବେ ସଂସାରକୁ ଖରାପ ବୋଲି କହି ନାହାନ୍ତି । ଜୀବନର ଆକର୍ଷଣରେ ସେ ମନ୍ତ୍ରମୁଗ୍ଧ ହୋଇ ବାରମ୍ବାର କହିଛନ୍ତି—"ଏହି ସୁନ୍ଦର ସଂସାର ଭିତରୁ ମୁଁ ମରିବାକୁ ଚାହେଁନି । ମୋର ଏହି ଚେତନାର ପ୍ରବାହ ଯେପରି ପୃଥିବୀର ପ୍ରତ୍ୟେକ ଘାସରେ ଏବଂ ବୃକ୍ଷର ମୂଳେ ମୂଳେ, ଶୀରେ ଶୀରେ ଧୀରେ ଧୀରେ ପ୍ରବାହିତ ହେଉଛି । ସମସ୍ତ ଶସ୍ୟକ୍ଷେତ୍ର ରୋମାଞ୍ଚିତ ହୋଇଉଠୁଛି, ନାରିକେଳ ଗଛର ପ୍ରତ୍ୟେକ ପତ୍ର ଜୀବନର ଆବେଗରେ ଥର ଥର ହୋଇ କମ୍ପି ଉଠୁଛି । ଜୀବନ ମଧ୍ୟରେ କେଉଁଠି ଯେ କିଛି ମାତ୍ର ଫାଙ୍କ ଅଛି ତାହା ସେତେବେଳେ ଜାଣି ନ ଥିଲି । ସବୁଗୁଡ଼ିକ ସତେ ଯେପରି ହସ କାନ୍ଦରେ ସୁଦୃଢ଼ ଭାବରେ ଗୁନ୍ଥା । ତାହାକୁ ଅତିକ୍ରମ କରି ଆଉ କିଛି ଦେଖାଯାଏ

ନାହିଁ । ଏପରିକ ଦେହ ମନ ପ୍ରାଣ ଓ ହୃଦୟର ସହ ସ୍ତବ୍ଧ ସ୍ପର୍ଶ ଦ୍ୱାରା ଯାହାକୁ ସବୁଠାରୁ ବେଶି ସତ୍ୟ ବୋଲି ମଣୁଥିଲି, ସେଇ ନିକଟର ମଣିଷ ଯେତେବେଳେ ଏତେ ସହଜରେ ଏକ ନିମିଷରେ ସ୍ୱପ୍ନ ଭଳି ମିଳାଇଗଲେ ; ସେତେବେଳେ ସମଗ୍ର ଜଗତ ଆଡ଼କୁ ଚାହିଁ ମନେ ହେଲା ଏ କି ଅଦ୍ଭୁତ ଆତ୍ମଖଣ୍ଡନ । ଯାହା ଅଛି, ଯାହା ରହିଲା ନାହିଁ ଏହି ଉଭୟ ମଧ୍ୟରେ କୌଣସି ରୂପେ କିପରି ଭାବରେ ମେଳ କରିବ ? ଗଛର ଗଛକୁ ଅନ୍ଧାରୁଆ ବାଡ଼ ଭିତରେ ଘେରାଇ ରଖିଲେ ତାହାର ସକଳ ଚେଷ୍ଟା ଯେପରି ସେହି ଅନ୍ଧକାରକୁ କୌଣସି ରୂପେ ଦୂର କରି ଆଲୋକ ଆଡ଼କୁ ମୁଣ୍ଡ ଟେକିବା ପାଇଁ ପଦାଙ୍ଗୁଳିରେ ଭରା ଦେଇ ଯଥା ସମ୍ଭବ ସିଧା ହୋଇ ଉଠିଥାଏ, ସେହିଭଳି ମୃତ୍ୟୁ ଯେତେବେଳେ ମନର ଚାରିଦିଗରେ ଅନ୍ଧକାରର ବାଡ଼ ବାନ୍ଧିଦେଲା ସେତେବେଳେ ସମସ୍ତ ମନ ପ୍ରାଣ ଅହୋରାତ୍ର ଦୁଃସାଧ୍ୟ ଚେଷ୍ଟାରେ ତାହାରି ଭିତରୁ ବାହାରିବାକୁ ଚାହିଁଲା । କିନ୍ତୁ ସେହି ଅନ୍ଧକାରକୁ ଅତିକ୍ରମ କରିବାର ପଥ ଅନ୍ଧକାର ଭିତରେ ଯେତେବେଳେ ଦେଖା ନ ଯାଏ ସେତେବେଳେ ତାହାଭଳି ଦୁଃଖ ଆଉ କ'ଣ ଅଛି ? କିନ୍ତୁ ଜୀବନ ପାଇଁ ଜୀବନ ପ୍ରତି ମୋର ଅତି ଆସକ୍ତି ପୁଣି ଚାଲି ଯାଇଥିଲା ବୋଲି ଚତୁର୍ଦ୍ଦିଗରେ ଆଲୋକିତ ନୀଳ ଆକାଶ ମଧ୍ୟରେ ଗଛଲତାର ଆନ୍ଦୋଳନ ମୋର ଅଶ୍ରୁଧୌତ ଚକ୍ଷୁରେ ଭାରି ଗୋଟିଏ ମାଧୁରୀ ବର୍ଷଣ କରୁଥିଲା । ଜଗତକୁ ସମ୍ପୂର୍ଣ୍ଣ ଓ ସୁନ୍ଦରକରି ଦେଖିବା ପାଇଁ ଯେଉଁ ଦୂରତ୍ୱର ପ୍ରୟୋଜନ, ମୃତ୍ୟୁ ସେହି ଦୂରତ୍ୱ ଘଟାଇ ଦେଇଥିଲା । ମୁଁ ନିର୍ଲିପ୍ତ ଭାବରେ ଦଣ୍ଡାୟମାନ ହୋଇ ମରଣର ବୃହତ୍ ପଟ୍ଟଭୂମିକା ଉପରେ ସଂସାରର ଛବିଟି ଦେଖିଲି ଏବଂ ଜାଣିଲି ଯେ ତାହା ଭାରି ମନୋହର ।" (ଜୀବନ ସ୍ମୃତି—ରବୀନ୍ଦ୍ରନାଥ ଟାଗୋର) ।

କବି ରବୀନ୍ଦ୍ରନାଥଙ୍କର ଏହି 'ହଜାଇବା' ଏବଂ 'ପାଇବା' ମଧ୍ୟରେ ଜୀବନ ଅଧିକ ଚମତ୍କାର ହୋଇ ଉଠିଛି । ଜୀବନଲୋକର ପ୍ରସାରିତ ଛବି ଖଣ୍ଡି ଶିଶିରସିକ୍ତ ନବୀନ ଓ ସୁନ୍ଦର ହୋଇ ଦେଖା ଦେଇଛି । ଶାନ୍ତିନିକେତନର ପ୍ରାଣମୟ ଜୀବନ ଭିତରେ ମୀଡ଼ହଜା ଚଢ଼େଇ ପୁଣି ମୀଡ଼କୁ ବାହୁଡ଼ ଆସେ ଏଇ ଖାଁଥର କୁଟୀ କାଠିରେ

ଆପଣାର ନିଜସ୍ୱ ମାତୃଭୂମି ରଚନା କରିବ ବୋଲି । ପୁଣି ନୂତନ ସୂର୍ଯ୍ୟର ଉଦୟ ଉତ୍ସବ ଭିତରେ କେତେ ସ୍ୱପ୍ନ ଆଉ ସମ୍ଭାବନା ନେଇ ଆରମ୍ଭ ହୁଏ ଜୀବନର ପ୍ରତିଟି ସକାଳ । ଅମୃତ ସାଗରର ଜଳବିନ୍ଦୁଟିଏ ମୁଁ । ଏଇ ତୀର୍ଥକୁ ବାରମ୍ବାର ଆସିଛି ଅତିଥି ହୋଇ ଭିନ୍ନ ଭିନ୍ନ ପରିବେଶରେ ଭିନ୍ନ ଭିନ୍ନ ସମୟରେ, କେତେବେଳେ All India Folklore Congressରେ (ବିଶ୍ୱଭାରତୀ ଆନୁକୂଲ୍ୟରେ) ଯୋଗ-ଦେବା ପାଇଁ ତ କେତେବେଳେ କବିତାର ସେମିନାରରେ କବିତା ପଢ଼ିବା ପାଇଁ । ଶାନ୍ତିନିକେତନର ଏହି ଆହ୍ୱାନ ଯେମିତି ଚିରନ୍ତନ । ଏଇ ତୀର୍ଥରେ ମୁଁ ବାରମ୍ବାର ଅବତରଣ କରି ମଧ୍ୟ ମୋର ଚେତନାର ଭୂମିରେ ବିଶ୍ୱମାତୃ ବିଶ୍ୱଭାରତୀ ପ୍ରତି ଶ୍ରଦ୍ଧାର ନିବେଦନ ଜଣାଇବି । ମୋ ଜୀବନରେ ତାହା ପୁଣି ନୂତନ ଭାବରେ ଉଦୟ ଉତ୍ସବ ହୋଇ ଦେଖାଦେବ ।



# ଜୀବନ ଯେଉଁଠି ଜୀବନ ଛୁଏଁ

"କାହିଁ ସେ ଜୀବନ କାହିଁ ସେ ଭୂଇଁ,
ଜୀବନ ଯେଉଁଠି ଜୀବନ ଛୁଏଁ
ଝଲମଲ ସିଏ ହେଉଛି କାହିଁ
ପ୍ରଶାନ୍ତ ଆକାଶେ ରଙ୍ଗ ପ୍ରାତେ ।"

ଜୀବନର କବି ରବୀନ୍ଦ୍ରନାଥ ଏଇ ଏକା କଥା କହିଛନ୍ତି ତାଙ୍କ କବିତାରେ, କଳାରେ, ସଙ୍ଗୀତରେ—କବି ରବୀନ୍ଦ୍ର ଗଦ୍ୟ ଲେଖିଛନ୍ତି କବିତା ପାଇଁ । ତାଙ୍କ ଗଦ୍ୟର ଗୁଣ ହେଉଛି କବିତାର ଗୁଣ । କବିତାରେ ଜୀବନ ଏବଂ ଜୀବନ ଭିତରେ କବିତା—ଏଇ ଦୁଇଟାର ମଧ୍ୟର ସମନ୍ୱୟ ତାଙ୍କ କବି ବ୍ୟକ୍ତିତ୍ୱ । କବିତା ସମ୍ପର୍କରେ ତାଙ୍କ ଏହି ସ୍ୱୀକାରୋକ୍ତି ଖୁବ୍ ତାତ୍ପର୍ଯ୍ୟପୂର୍ଣ୍ଣ ।

"କବିତା ମୋର ବହୁକାଳର ପ୍ରେୟସୀ । ବୋଧହୁଏ ଯେତେବେଳେ ରଥୀ ଭଳି ମୋର ବୟସ ଥିଲା ସେଇ କାଳରୁ ହିଁ ସେ ମୋର ବାଗଦତ୍ତା ହୋଇଥିଲା । ସେଇଦିନରୁ ଆମ ପୋଖରୀକୂଳର ବରମୂଳ, ଘର ଭିତରର ବଗିଚା ଏବଂ ଏକତାଲାର ଅନାବିଷ୍କୃତ ଘରଗୁଡ଼ିକ ଓ ସମସ୍ତ ବାହାର ଦୁନିଆଁ । ଦାସୀମାନଙ୍କ ମୁହଁର ସମସ୍ତ ରୂପକଥା ଓ ଗ୍ରାମ୍ୟ ଗୀତ ; ମୋ ମନରେ ଗୋଟିଏ ମାୟା ଜଗତ ସୃଷ୍ଟି କରିଥିଲା । ସେ ସମୟରେ ସେଇ ଅପୂର୍ବ ମନର ଭାବ ପ୍ରକାଶ କରିବା ଅତି କଠିନ × × × × ଜୀବନରେ ଜ୍ଞାତ ବା ଅଜ୍ଞାତସାରରେ ଅନେକ ମିଥ୍ୟା ଆଚରଣ କରିଯାଏ; କିନ୍ତୁ କବିତାରେ ମୁଁ ମିଥ୍ୟା କଥା କହିନାହିଁ ଏବଂ ତାହା ହିଁ ମୋ ଜୀବନର ସମସ୍ତ ଗଭୀର ସତ୍ୟର ଏକମାତ୍ର ଆଶ୍ରୟ ସ୍ଥାନ । ଆମ୍ଭମାନଙ୍କ ଅନ୍ତର ମଧ୍ୟରେ ସର୍ବଦା ଗୋଟିଏ ଭଙ୍ଗାଗଢ଼ା ଚାଲିଥିଲା ଓ ଯୋଗାଯୋଗ ଗଢ଼ୁଛି । କିଛି କିଛି ଭାବ, କିଛି

ଛବି ନାନା ରକମର ଚେହେରା ଧରୁଛି । ତାହାର ସହିତ ମୋ କଲମର କାରବାର, ଏହା ପୂର୍ବରୁ ମୋ ମନ ଆକାଶକୁ କାନ ଡେରିଥିଲା, ପବନରୁ ଯେଉଁ ସ୍ୱର ଆସୁଥିଲା ମୁଁ ଶୁଣିବାକୁ ପାଉଥିଲି । ଫୁଲ ଯେତେବେଳେ ଫୁଟେ ସେତେବେଳେ ମନେ ହୁଏ ଯେ, ଫୁଲ ହିଁ ଯେପରି ଗଛର ଏକମାତ୍ର ଲକ୍ଷ୍ୟ । ତାର ସୌନ୍ଦର୍ଯ୍ୟ ଓ ସୁଗନ୍ଧରୁ ମନେ ହୁଏ ତାହା ଯେପରି ବନଲକ୍ଷ୍ମୀର ସାଧନାର ଚରମ ଐଶ୍ୱର୍ଯ୍ୟ । ସେ ଫଳ ଫଳାଇବାର ଉପଲକ୍ଷ୍ୟ ମାତ୍ର । ବର୍ତ୍ତମାନର ଗୌରବ ମଧ୍ୟରେ ହିଁ ସେ ପ୍ରଫୁଲ୍ଲ । ଭବିଷ୍ୟତ ତାହାକୁ ଅଭିଭୂତ କରିଦିଏ ନାହିଁ । ପୁଣି ଫଳକୁ ଦେଖି ମନେ ହୁଏ ଯେ ସେ ଯେପରି ସଫଳତାର ଚୂଡ଼ାନ୍ତ । କିନ୍ତୁ ଭାବୀ ତରୁ ପାଇଁ ସେ ଯେ ବୀଜକୁ ଗର୍ଭ ମଧ୍ୟରେ ପରିଣତ କରି ଗଢ଼ୁଛି ; ଏ କଥା ଅନ୍ତରାଳରେ ରହିଯାଏ । ଫୁଲ ଫୁଟିଛି ଏହା ହିଁ ଫୁଲର ଚରମ କଥା । ଯାହାକୁ ଭଲ ଲାଗିଲା ସେଇ ଜାଣିଲା । ଫୁଲର ମହତ୍ତ୍ୱ ତା ନିଜର ପ୍ରକାଶରେ । ସୁନ୍ଦରର ଅନ୍ତରରେ ଅଛି ରସମୟ ରହସ୍ୟମୟ ଆଯୁତ୍ତର ଅତୀତ ଗୋଟିଏ ସତ୍ୟ । ଆମ୍ଭମାନଙ୍କ ଅନ୍ତର ସହିତ ତାହାର ଅନିର୍ବଚନୀୟ ସମ୍ବନ୍ଧ । ତାହା ସମ୍ପର୍କରେ ଆମ୍ଭ-ମାନଙ୍କର ଆତ୍ମଚେତନା ହୁଏ ମଧୁର, ଗଭୀର ଓ ଉଜ୍ଜ୍ୱଳ । ଆମ୍ଭମାନଙ୍କର ଭିତରର ମଣିଷ ବି ବଢ଼ି ଉଠେ ; ତହିଁରେ ରଙ୍ଗ ଧରେ ; ତାହା ରସମୟ ହୁଏ । ଆମ୍ଭମାନଙ୍କ ସତ୍ତା ଯେପରି ତାହା ସଙ୍ଗରେ ରଙ୍ଗ ରସରେ ମିଳିଯାଏ । ଏହାକୁ କହନ୍ତି ଅନୁରାଗ । କବିଙ୍କ କାମ ହେଲା, ଏହି ଅନୁରାଗରେ ମନୁଷ୍ୟର ଚୈତନ୍ୟକୁ ଉଦ୍ଦୀପ୍ତ କରିବା, ଔଦାସୀନତାକୁ ଉଦ୍‌ବୋଧିତ କରିବା । ସେହି କବିକୁ ହିଁ ଲୋକେ ବଡ଼ ବୋଲି କହନ୍ତି, ଯିଏ ଏପରି ସବୁ ବିଷୟରେ ମନୁଷ୍ୟର ମନକୁ ଆଶ୍ଳିଷ୍ଟ କରେ, ଯାହା ମଧ୍ୟରେ ନିତ୍ୟତା ଅଛି, ମହିମା ଅଛି, ଶକ୍ତି ଅଛି, ଯାହା ବ୍ୟାପକ ଓ ଗଭୀର । କଳା ଓ ସାହିତ୍ୟ ଭଣ୍ଡାରରେ ସବୁ ଦେଶରେ ସବୁ କାଳରେ ଅନୁରାଗର ସମ୍ପଦ ରଚିତ ଓ ସଞ୍ଚିତ ହୋଇ ଉଠୁଛି । ଏହି ବିଶାଳ ସଂସାରରେ ମନୁଷ୍ୟ କାହାକୁ ବିଶେଷ କରି ଭଲ ପାଇଛି ତାହା ତାର ସାହିତ୍ୟ ଦେଖିଲେ ହିଁ ବୁଝା ପଡ଼େ । ଏହି ଭଲ ପାଇବା ଦ୍ୱାରା ହିଁ ମନୁଷ୍ୟକୁ ବିଚାର କରାଯାଇପାରେ । ଭର୍ତ୍ତୃହରିଙ୍କ କାବ୍ୟରେ

ଦେଖି ଯେ ଭୋଗର ମନୁଷ୍ୟ ଆପଣା ସୁଖ ପାଇଛି ; କିନ୍ତୁ ତା ସଙ୍ଗେ ସଙ୍ଗେ କାବ୍ୟର ଗମ୍ଭୀର ପ୍ରଦେଶରେ ତ୍ୟାଗର ମନୁଷ୍ୟ ନିଜର ଏକଛାଇବୃତ୍ତି ନେଇ ବସି ରହିଛି । ସାହିତ୍ୟରେ ମନୁଷ୍ୟର ଅନୁରାଗ ସମ୍ପଦ ସୃଷ୍ଟି କରିବା ଯଦି କବିର ଯଥାର୍ଥ କାମ ହୁଏ, ତେବେ ଏହି ଦାନ ଗ୍ରହଣ କରିବାକୁ ଗଲେ ପ୍ରୀତିର ପ୍ରୟୋଜନ । ଜୀବନକୁ ଭଲ ପାଇବା ଭିତରେ ଜୀବନକୁ ହଜାଇବା ଏବଂ ଖୋଜିବା ମଧ୍ୟରେ ରବୀନ୍ଦ୍ରନାଥଙ୍କର ଏହି ସ୍ୱୀକାରୋକ୍ତି ଦେଖିଲେ ବିସ୍ମିତ ନ ହୋଇ ରହି ହୁଏ ନାହିଁ । କାଗଜ, କଲମ, ଘଡ଼ି, ଖାତା ଓ ଚଷମା ଇତ୍ୟାଦି ମୋର ଅଧିକାଂଶ ଜିନିଷ ପ୍ରତିଦିନ ଅସାବଧାନତା ହେତୁ ହଜାଇଥାଏ, ନିଜକୁ ମଧ୍ୟ କେତେବେଳେ ହଜାଇବସେ ଯେ ଆଉ ତାର ଠିକଣା ଖୋଜି ପାଏ ନାହିଁ ।

'ପଦ୍ମା' ନଦୀ ତୀରରେ ବସି କବି ମହାକାଳରୁ ସ୍ୱର୍ଣ୍ଣତରୀ ପାଇଁ କେବଳ ଛନ୍ଦର ଫସଲ ଫଳାଇବାକୁ ଇଚ୍ଛା କରି ନ ଥିଲେ—ସୁନ୍ଦର ପୃଥିବୀରେ ମନୋରମ ଜୀବନ ଭିତରେ ଧରାବତରଣ କରିବା ନିମନ୍ତେ ବାରମ୍ବାର ଇଚ୍ଛା ପୋଷଣ କରିଥିଲେ ।

ସଂସାରର ବିଚିତ୍ରତାକୁ ଅନୁଭବ କରି ମୁଁ ଆଗରୁ କେବେ ଏତେଦୂର ଚମତ୍କୃତ ହୋଇ ନ ଥିଲି । ଜୀବନର ଶୋଭାମୟତାକୁ ମୁଁ ଏପରି ନିବିଡ଼ ଭାବରେ ଆଗରୁ କେବେ ଅନୁଭବ କରି ନ ଥିଲି । ରବୀନ୍ଦ୍ର ସଙ୍ଗୀତ, ସାହିତ୍ୟ କଳା ସବୁ ଭିତରେ ଯେପରି ମୁଁ ବଞ୍ଚିବାର ଏକ ଅଭିନବ କୌଶଳ, ଜୀବନକୁ ଭଲ ପାଇବାର ଏକ ମୁଗ୍ଧ ଅନୁଭବ ଭିତରେ ଯେପରି ଏଇ ଶାନ୍ତିନିକେତନରେ ଅଭିଭୂତ ହୋଇଗଲି । ଯଦି କେବେ କୌଣସି ଜୀବନର ଘୂର୍ଣ୍ଣି ଭିତରେ କ୍ଷଣିକ ପାଇଁ ଅଟକି ଯିବି, ତେବେ ବି ସ୍ରୋତର ସ୍ପନ୍ଦନକୁ କେବେହେଲେ ଭୁଲିଯିବି ନାହିଁ । ଆପଣାର ପୃଷ୍ଠାପୂନ କର୍ମକୁ କେବେ ନଷ୍ଟକରି ଦେବି ନାହିଁ ।



# କବିତାର ବସୁନ୍ଧରା

କବିତାର ବସୁନ୍ଧରା, ଏଭଳି ଏକ ମୁଗ୍‌ଧ ମଧୁର ଔଜ୍ଜଲ୍ୟମୟ ଜଗତ ଯେଉଁଠି କବି କେବଳ ଗୋଟାଏ ସ୍ୱପ୍ନରୁ ଆଉ ଗୋଟିଏ ସ୍ୱପ୍ନକୁ ସମନ୍ୱିତ କରିବାର ପ୍ରଚେଷ୍ଟାରେ ମଗ୍ନ ରହେ । କବିତାର ବସୁନ୍ଧରା ଭିତରେ ଜୀବନର ସବୁ ଉଚ୍ଛ୍ୱାସ, ସବୁ ସ୍ୱପ୍ନ, ସବୁ ସୂର୍ଯ୍ୟାସ୍ତ, ସବୁ ସୂର୍ଯ୍ୟୋଦୟ ଅପୂର୍ବ ପରିତୃପ୍ତିରେ ପରିତୃପ୍ତ ହୋଇଯାଏ ; ଜୀବନ ସୁନ୍ଦର ଲାଗେ । ପ୍ରତିନିୟତ ଅସଂଖ୍ୟ ଶବ୍ଦ ଆସି ଅନୁଭବର ଉର୍ବର ଭୂମିକୁ ଶସ୍ୟାସ୍ନିତ କରିଦିଏ । କବିତାର ବସୁନ୍ଧରା ଭିତରେ ମାଉବଢାର ଜଯୂଧ୍ୱନୀ, ଏବଂ ମାଉବଢ଼ା ଭିତରେ କୁମ୍ଭାଟୁଆର ଗମ୍ଭୀରିଆ କୁହାଟ, ଧୂ ଧୂ ଖରାବେଳ, ଭଇଁଚକୋଳି, ବେଡ଼କୋଳି, ବରକୋଳିର ଅପୂର୍ବ ମାଧୁର୍ଯ୍ୟ ସହିତ ଶୈଶବର ସ୍ନିଗ୍‌ଧ ଅନୁଭୂତି କବିତାର ବସୁନ୍ଧରାକୁ ଉଚ୍ଚାଟିତ କରିଦିଏ ଏବଂ କଭଳି ଏକ ଅନ୍ତରଙ୍ଗ ଅନୁଭବ ଭିତରେ ଅଭିଷିକ୍ତ ହୁଏ କବିତା ହୃଦୟର ଅଦୃଶ୍ୟ ବେପଥରେ, ଅନ୍ତରଙ୍ଗ ଅଙ୍ଗୀକାରରେ, ଏକଲି ନଈର ଗୀତ ଭିତରେ । କୁହୁଡ଼ିଆ ସକାଳର ଧାନ କିଆରୀ ଭିତରୁ ନବାନ୍ନର ଧାନକେଣ୍ଡାରେ ଜୀବନ ସ୍ମୃତିମୟ ହୋଇଉଠେ । ଗାଆଁର ମୋହମୟ ପରିବେଶ ଭିତରେ ଶୈଶବର ସ୍ମୃତି ସୁନ୍ଦର ହୋଇ ଦେଖାଦିଏ । ଆତ୍ମମଗ୍ନ ନକ୍ଷତ୍ର ଆକାଶ ତଳେ ପିଲାଦିନର ପୃଥିବୀ ସ୍ମୃତିମୟତାରେ ଭରିଉଠେ । ସୁବର୍ଣ୍ଣରେଖା କମ୍ପା ସାଲନ୍ଦୀର ମିଠା ମିଠା ବାସ୍ନା ଭିତରୁ ଜୀବନ ଉଙ୍କିମାରେ । ଜୀବନ ଭିତରେ ସ୍ମୃତି; ସ୍ମୃତିରେ ଜୀବନ-କବିତାର ବସୁନ୍ଧରାକୁ ଆହୁରି ନିବିଡ଼, ଆହୁରି ଚମତ୍କାର କରିଦିଏ ।

ଶବ୍ଦର ପୃଥିବୀ ଯେତେବେଳେ ସମ୍ପୂର୍ଣ୍ଣ ନିଃଶବ୍ଦ ହୋଇଯାଏ, ଯେତେବେଳେ ଚନ୍ଦ୍ରଁସମୂଳ ସଞ୍ଜିବନୀ ବାସ୍ନାରେ ମହକ ଉଠେ ସେତେବେଳେ ସେଇ ରହସ୍ୟମୟ ସଞ୍ଜରେ କବିପରି କପରି ତୁପ୍‌ଚୁପ୍

ବସିରହେ ଗାଉଁଲି ମଣିଷଟିଏ ଯାହାର ନିର୍ଲିପ୍ତ ଆଖି ଭିତରେ କବିତାର ବସୁନ୍ଧରା ବସାବାନ୍ଧି ରହିଥାଏ । ଏହି ପ୍ରେମମୟ ପୃଥିବୀରେ କେହି ଜଣେ ଆପଣାର ଲୋକର ସ୍ନେହର ଦୁର୍ଗ ଘରପାଖରେ ବନ୍ଦୀର ହୋଇ କବି ଘୂରି ବୁଲେ । ଏହି ସୁକୁମାର ଗୁଣ ଟିକକ ପାଇଁ ଜୀବନର ସବୁ ବ୍ୟର୍ଥତା, ସବୁ ଅସହାୟତାକୁ ଅତିକ୍ରମି ଯିବା ପାଇଁ ଇଚ୍ଛା ହୁଏ । ଶୈଶବର ନଈ ବୋହିଯାଏ ତା ବାଟରେ କେତେବେଳେ ଲୁହ ହୋଇ ତ କେତେବେଳେ ସ୍ମୃତି ହୋଇ । କବିତାର ଇଲାକା ଭିତରେ ବାସ୍ନାମୟ ଅନୁଭବ ଟିକକ ଧରି ରଖେ କବି । କବିତାରେ ବଞ୍ଚିବା ଯେ କେତେ କଷ୍ଟକର ତାହା ସେ ମର୍ମେ ମର୍ମେ ଅନୁଭବ କରେ । କବିର ହୃଦୟ ଲୁହର ପୃଥିବୀରେ ବାରମ୍ବାର ଭୂମିକମ୍ପ ହେଉଥାଏ । ବିଷାଦର ନଈକୂଳରେ ଏକା ଏକା ବଞ୍ଚିବା ଯେପରି କବିର ଭାଗ୍ୟ । ସାରା ରାତି ଅନିଦ୍ରାରେ ବିତାଇବା ଯେପରି ତାର ଭାଗ୍ୟ । ଏହି ଏକାକୀତ୍ୱ, ଏହି ଉଦାସୀନତା ଭିତରେ ଧୀର ହୋଇଯାଏ କବି । ଶୈଶବର ସ୍ମୃତି-ମୁଖର ଦିନ, ସ୍ନେହ ଶ୍ରଦ୍ଧା ଏବଂ ସମ୍ବେଦନାମୟ ଜହ୍ନିଫୁଲର ପୃଥିବୀ ମଧ୍ୟରେ କବି ସାରାଜୀବନ ଖୋଜିବୁଲେ । କବିତାର ବସୁନ୍ଧରା ଭିତରେ କବି କେତେ ଏକୁଟିଆ, କେତେ ନିଃସଙ୍ଗ ।



# ରବୀନ୍ଦ୍ରନାଥ ଏବଂ ଲୋକ ସାହିତ୍ୟ

ଲୋକ ସାହିତ୍ୟ ଜାତୀୟ ବ୍ୟକ୍ତିତ୍ୱ ବିକାଶର ଏକ ଆଦିମ ସାଧନ । ଲୋକଗୀତ ହିଁ ଲୋକର ପ୍ରଚଳିତ ବେଦ । ଲୋକଗୀତ ସମୂହ ଜୀବନରେ ପ୍ରତିଫଳିତ ଯୁଗଯୁଗାନ୍ତର ଚିନ୍ତା ଓ ଅନୁଭବର ଫସଲ । ଏହା ଚିର ପୁରାତନ ଏବଂ ଚିର ନୂତନ । ଏହି ଲୋକ ସାହିତ୍ୟ ରବୀନ୍ଦ୍ରନାଥଙ୍କ ଜୀବନ ଉପରେ ଗଭୀର ପ୍ରଭାବ ବିସ୍ତାର କରିଥିଲା । ସେ ନିଜେ ସ୍ୱୀକାର କରିଛନ୍ତି ଯେ ବାଉଲ୍‌ଗାନ୍ ମଧ୍ୟ ଦେଇ ସେ ନିଜ ହୃଦୟର ଭାବ ଏବଂ ଭାଷାର ପ୍ରଥମେ ସନ୍ଧାନ ପାଇଥିଲେ । ପରବର୍ତ୍ତୀ ସମୟରେ ଉପନିଷଦ ଭିତରେ ମଧ୍ୟ ସେଇକଥା ଉପଲବ୍ଧି କରି ବିସ୍ମିତ ହୋଇଯାଇଥିଲେ "ବୃଷ୍ଟି ପଡ଼େ ଟାପୁର୍ ଟୁପୁର୍ ନଦାୟେ ଏଲ ବାନ୍', ଏହି ଡଗଟି ପିଲାବେଳେ ମୋ' ନିକଟରେ ମୋହମନ୍ତ୍ର ଭଳି ଥିଲା ଏବଂ ସେହି ମୋହ ବର୍ତ୍ତମାନ ସୁଦ୍ଧା ମୁଁ ଭୁଲିପାରି ନାହିଁ । ମନର ଏହି ମୁଗ୍ଧ ଅବସ୍ଥା ସ୍ମରଣ କରି ନ ଦେଖିଲେ ଡଗ-ଡମାଳୀର ମାଧୁର୍ଯ୍ୟ ଓ ଉପଯୋଗିତା ସ୍ପଷ୍ଟଭାବରେ ବୁଝିହେବ ନାହିଁ । ରବୀନ୍ଦ୍ରନାଥ ତାଙ୍କ ଜୀବନ ସନ୍ଧ୍ୟାରେ କହିଥିଲେ—

"କୃଷ୍ଣା ତୋ'ର ଜୀବନେର୍ ଶରୀକ ଯେ ଜନ
କର୍ମେ ଓ କଥାୟ ସତ୍ୟ ଆତ୍ମୀୟତା କରେଛେ ଅର୍ଜ୍ଜନ
ଯେ ଆଛେ ମାଟିର କାଛା କାଛି
ଯେ କବିର ବାଣୀ ଲାଗି କାନ୍ ପେତେ ଆଛି
ସାହିତ୍ୟେର ଆନନ୍ଦେର ଭୋଜେ
ନିଜେ ଯା ପାରିନା ଦିତେ, ନିତ୍ୟ ଆମି ଥାକି ତାରି ଖୋଜେ ।

ରବୀନ୍ଦ୍ରନାଥଙ୍କ ଜୀବନ ଆରମ୍ଭରୁ ଯେତେବେଳେ ଭାରତୀୟ ଉପନିଷଦ କିମ୍ବା ବିଦେଶୀ ସାହିତ୍ୟର କୌଣସି ପ୍ରଭାବ ତାଙ୍କ ମନ ଉପରେ ପଡ଼ି ନାହିଁ ଏବଂ ଯେତେବେଳେ ତାଙ୍କ ମନ ସମ୍ପୂର୍ଣ୍ଣ ଭାବରେ

ଉଦ୍ଭୁକ୍ତ, ସେତେବେଳେ ତାଙ୍କ ମନ ଭିତରେ ଗୋଟାଏ ଚେତନା ଆଶ୍ରୟ ନେଇଥିଲା, ଯାହାର ପ୍ରଭାବରୁ ସେ ସାରା ଜୀବନ ମୁକ୍ତିଲାଭ କରିପାରି ନାହାନ୍ତି, ତାହା ବଙ୍ଗଳାର "ବାଉଲ୍‌ଗାନ୍" । ସେତେବେଳେ ରବୀନ୍ଦ୍ରନାଥଙ୍କ ବୟସ ମାତ୍ର ବାଇଶି ବର୍ଷ । ରବୀନ୍ଦ୍ରନାଥ ନିଜେ ସ୍ୱୀକାର କରିଛନ୍ତି ଯେ 'ବାଉଲ୍‌ଗାନ୍' ଭିତରେ ସେ ତାଙ୍କ ହୃଦୟର ଭାବ ଏବଂ ଭାଷାର ପ୍ରଥମ ସନ୍ଧାନ କରିଛନ୍ତି । ବାଲ୍ମୀକି ଆଦ୍ୟ ଶ୍ଲୋକ ମଧ୍ୟରେ ଯେଉଁ ଛନ୍ଦ, ଭାବ ଏବଂ ଭାଷାର ସନ୍ଧାନ ପାଇଥିଲେ ରବୀନ୍ଦ୍ରନାଥ ମଧ୍ୟ ତାଙ୍କ ସାଧନାରେ ଅଗ୍ରସର ହେବା ସମୟରେ ବାଉଲ୍‌ଗାନ ମଧ୍ୟ ଦେଇ ତାହା ଆବିଷ୍କାର କରିଛନ୍ତି । ବାଉଲ୍‌ମାନଙ୍କ ବିଶ୍ୱପ୍ରେମ ମଧ୍ୟରେ ରବୀନ୍ଦ୍ରନାଥ ନିଜ ହୃଦୟର ସ୍ପନ୍ଦନ ଏକାକାର କରି ଦେଇଛନ୍ତି । ଭାରତୀୟ ଉପନିଷଦ କିମ୍ବା ପାଶ୍ଚାତ୍ୟ ଦର୍ଶନର ପ୍ରଭାବ ରବୀନ୍ଦ୍ରନାଥଙ୍କ ଉପରେ ପଡ଼ିବା ପୂର୍ବରୁ ବାଉଲ୍‌ର ଆଧ୍ୟାତ୍ମ ଦର୍ଶନର ପ୍ରଭାବ ତାଙ୍କ ଉପରେ ପଡ଼ିଥିଲା । ତେଣୁ ରବୀନ୍ଦ୍ରନାଥଙ୍କ ଆଧ୍ୟାତ୍ମିକ ମାନସର ଉତ୍ସ ସନ୍ଧାନ କରିବାକୁ ଗଲେ ଉପନିଷଦ କିମ୍ବା କୌଣସି ପାଶ୍ଚାତ୍ୟ ଦର୍ଶନ ବଦଳରେ ବାଉଲ୍‌ଗାନ୍ ମଧ୍ୟରୁ ତାହା ସନ୍ଧାନ କରିବାକୁ ହେବ । 'ବାଉଲ୍‌ଗାନ୍' ସଂଗ୍ରହର ଭୂମିକା ଲେଖିବାକୁ ଯାଇ ରବୀନ୍ଦ୍ରନାଥ ସ୍ୱୀକାର କରିଛନ୍ତି ଯେ, "ମୋ ଲେଖା ଯେଉଁମାନେ ପଢ଼ିଛନ୍ତି, ସେମାନେ ଜାଣନ୍ତି ଯେ 'ବାଉଲ୍ ପଦାବଳୀ' ପ୍ରତି ମୋ ଅନୁରାଗର ପ୍ରକାଶ ମୋର ଅନେକ ଲେଖାରେ ସ୍ପଷ୍ଟ ହୋଇଛି । × × × । ମୋର ଅନେକ ସଙ୍ଗୀତ ଭିତରେ ମୁଁ ବାଉଲର ସ୍ୱର ଗ୍ରହଣ କରିଛି ଏବଂ ଅନ୍ୟ ରାଗ-ରାଗିଣୀ ସହିତ ମଧ୍ୟ ମୋର ଜ୍ଞାତ କିମ୍ବା ଅଜ୍ଞାତସାରରେ ତାହାର ମିଳନ ଘଟିଛି । ରବୀନ୍ଦ୍ରନାଥ ବାଉଲ୍ ମୁହଁରେ ଜୀବନର ପ୍ରଥମ ଭାଷାର ସନ୍ଧାନ ପାଇଛନ୍ତି । ପରବର୍ତ୍ତୀ ସମୟରେ ଉପନିଷଦ ମଧ୍ୟରେ ତାହାର ସମର୍ଥନ ପାଇ ନିଶ୍ଚିନ୍ତ ହୋଇ-ଯାଇଛନ୍ତି । ବାଉଲ୍ ଭିତରେ ସେ ଭାରତୀୟ ଉପନିଷଦକୁ ଅନୁଭବ କରିଛନ୍ତି । ଯେପରି ଜଣେ ବାଉଲ୍ ଏକତାରା ବଜେଇ ଗାଇଛି—

"କୋଥାଏ ପାବ ତାରେ
ଆମାର ମନେର ମାନୁଷ ଯେରେ

ହାସଏ ସେଇ ମାନୁଷେ ତାର ଉଦ୍ଦେଶେ
ଦେଶ ବିଦେଶେ ବେଡ଼ାଇ ଘୁରେ ।"

ଅତି ସାଧାରଣ କଥା । କିନ୍ତୁ ଅପୂର୍ବ ସୁର ମାଧ୍ୟମରେ ତାହାର ଅର୍ଥ ଅନବଦ୍ୟ ହୋଇ ଉଠିଛି । ଏହି କଥାଟି ଉପନିଷଦରେ ମଧ୍ୟ ଶୁଣାଯାଏ । "ତଂ ବେଦ୍ୟ ପୁରୁଷଂ ବେଦ, ମା ବୋ ମୃତ୍ୟୁ ପରିବ୍ୟଥା" ଯାହାଙ୍କୁ ଜାଣିବା କଥା ସେହି ପରମ ପୁରୁଷଙ୍କୁ ଜାଣ; ନଚେତ୍ ମରଣ ଯନ୍ତ୍ରଣା — ନିରକ୍ଷର ବାଉଲ୍‌ମାନଙ୍କ ଗୀତ ଭିତରେ ଔପନିଷଦୀୟ ସତ୍ୟର ଉପଲବ୍‌ଧି କରି ରବୀନ୍ଦ୍ରନାଥ ସେମାନଙ୍କୁ ଏକ ବିଶେଷ ମର୍ଯ୍ୟାଦା ଦେଇଛନ୍ତି ।

ପାଶ୍ଚାତ୍ୟ ଶିକ୍ଷା ଦେଶରେ ପ୍ରସାର ଲାଭ କରିବା ଫଳରେ ଶିକ୍ଷିତ ସମାଜ ଅଶିକ୍ଷିତ ସମାଜ ଠାରୁ ବିଚ୍ଛିନ୍ନ ହେବା ଲକ୍ଷ୍ୟକରି ରବୀନ୍ଦ୍ରନାଥ ଭୀଷଣ ଉଦ୍‌ବେଗ ପ୍ରକାଶ କରୁଥିଲେ । ଦେଶ ଦେଶ ଭିତରେ ଏବଂ ସମାଜ ସମାଜ ଭିତରେ ଅଖଣ୍ଡତା ରହିବା ଦରକାର । ଗୋଷ୍ଠୀଗତ ବିଚ୍ଛିନ୍ନତା ରହିବା ହାରି ଦେଶ ପକ୍ଷରେ କ୍ଷତିହେବା ସ୍ୱାଭାବିକ । ତେଣୁ ସେ ବିଶ୍ୱାସ କରୁଥିଲେ, ଏହି ଲୋକ ସାହିତ୍ୟ ମାଧ୍ୟମରେ ଅଖଣ୍ଡତା ରକ୍ଷା କରିଯାଇ ପାରିବ । ସେ ଅନେକ ସମୟରେ ସ୍ୱୀକାର କରିଛନ୍ତି ଯେ — "ପିଲା ଭୁଲାଣିଆ ଡଗଡମାଳ ଭିତରେ ମୁଁ ଯେଉଁ ରସ ଆସ୍ୱାଦନ କରେ, ଶୈଶବ ସ୍ମୃତିରୁ ତ ହାକୁ ବିଚ୍ଛିନ୍ନ କରି ଦେଖିବା ମୋ' ପକ୍ଷରେ ଅସମ୍ଭବ । ସେହି ଡଗଡମାଳ ଗୁଡ଼ିକର ମାଧୁର୍ଯ୍ୟ କେଉଁ ପରିମାଣରେ ସାହିତ୍ୟର ଚିରସ୍ଥାୟୀ ଆଦର୍ଶ ଉପରେ ନିର୍ଭର କରୁଛି ତାହା ନିର୍ଣ୍ଣୟ କରିବାର କଥା । 'ଜଲ୍ ପଡ଼େ ପାତା ନଡ଼େ'— ମୋ' ଜୀବନରେ ଏଇଟି ହେଉଛି ଆଦିକବିର ପ୍ରଥମ କବିତା । ସେଦିନର ଆନନ୍ଦ ଆଜି ମଧ୍ୟ ଯେତେବେଳେ ମନେ ପଡ଼େ ସେତେବେଳେ ବୁଝିପାରେ ଯେ କବିତା ଭିତରେ ପଦ ମିଳନ ପଦାର୍ଥଟିର କାହିଁକି ଏତେ ପ୍ରୟୋଜନ । ଏହି ମିଳନ ଅଛି ବୋଲି କଥାଟି ଶେଷହୋଇ ମଧ୍ୟ ଶେଷ ହୁଏନି ।" ଏଇ ପିଲା ଭୁଲାଣିଆ ଡଗଡମାଳ ଅବଲମ୍ବନ କରି ଆଧୂନିକ ବଙ୍ଗଳା କବିତା ରଚନାରେ ପ୍ରୟାସୀ ହୋଇଛନ୍ତି । ଏହି ଧାରି

ଅନୁସରଣ କରି ରବୀନ୍ଦ୍ରନାଥ ତାଙ୍କ ଶେଷ ଜୀବନ ପର୍ଯ୍ୟନ୍ତ ଅସଂଖ୍ୟ କବିତା ରଚନା କରି ବଙ୍ଗଳା ଛଡ଼ାମାନଙ୍କୁ ଏକ ବିଶେଷ ମର୍ଯ୍ୟାଦା ଦେଇଛନ୍ତି । ତାହା ମଧ୍ୟରେ ଦୃଷ୍ଟିପଡ଼େ ଝାପୁର ଝୁପୁର କବିତାର ବିଷୟ ଭାବ ଏବଂ ଭାଷା ବଙ୍ଗଳା ଛଡ଼ାମାନଙ୍କରୁ ଗୃହୀତ ହେଲେ ମଧ୍ୟ 'ସାତ ଭାଇ ଚମ୍ପାର' ଶିଷୟଟି ବଙ୍ଗଳାର ଗୋଟିଏ କରୁଣ ସ୍ନେହ କୋମଳ ରୂପ କଥାରୁ ଗୃହୀତ । ରବୀନ୍ଦ୍ରନାଥଙ୍କ କବିତା ଭିତରେ ରୂପ-କଥାର ଭାବ ସୌନ୍ଦର୍ଯ୍ୟ ଅତ୍ୟନ୍ତ ଚମତ୍କାର ଭାବରେ ପ୍ରକାଶିତ ହୋଇଛି ।

ରବୀନ୍ଦ୍ରନାଥ ତାଙ୍କ ପିଲା ଭୁଲାଣିଆ ଛଡ଼ାମାନ ପ୍ରବନ୍ଧର ଆରମ୍ଭରେ କହିଛନ୍ତି ଆମ ଭାଷା ଏବଂ ସମାଜର ଇତିହାସ ନିର୍ଣ୍ଣୟ ଦିଗରେ ସେହି ଛଡ଼ାମାନଙ୍କର ବିଶେଷ ମୂଲ୍ୟ ରହିପାରେ । କିନ୍ତୁ ତାହା ଭିତରେ ଯେ ସହଜ ସ୍ୱାଭାବିକ୍ ଗୋଟିଏ କାବ୍ୟରସ ରହିଛି ତାହା ମୋ ନିକଟରେ ଅଧିକ ଆଦରଣୀୟ ଅନୁଭୂତ ହେଉଥିଲା । ଏଥିରୁ ସ୍ପଷ୍ଟ ହୋଇଥାଏ ଯେ ଏହି ଛଡ଼ାମାନଙ୍କର ଯେ ଏକ ଭାଷା ତାତ୍ତ୍ୱିକ ଏବଂ ସମାଜତାତ୍ତ୍ୱିକ ମୂଲ୍ୟ ରହିଛି ; ତାହା ରବୀନ୍ଦ୍ରନାଥ ଅବଗତ ଥିଲେ । ଏହି ଛଡ଼ାମାନ ଭିତରେ ଗୋଟିଏ ପ୍ରକାର ଚିରନ୍ତନତା ରହିଛି । ଏହା ପୁରାତନ ହୋଇ ମଧ୍ୟ ନିତ୍ୟ ନୂତନ । ତରଳ ଓ ସ୍ୱଚ୍ଛ ସରୋବର ଉପରେ ମେଘ ଝିଞ୍ଜିତ ନଭୋମଣ୍ଡଳର ଛାୟା ପରି ଏହି ଛଡ଼ାମାନ ଗୁଡ଼ିକ ଆମର ନିତ୍ୟ ପରିବର୍ତ୍ତିତ ଅନ୍ତରାକାଶର ଛାୟା ମାତ୍ର । ସେଥିପାଇଁ ଏ ଗୁଡ଼ିକ ସମ୍ବନ୍ଧରେ—"ଏହି ଛଡ଼ା ମାନ ସହିତ ଚିରକାଳ ଯେଉଁ ସ୍ନେହାର୍ଦ୍ର ସରଳ ମଧୁର କଣ୍ଠେ ଧ୍ୱନିତ ହୋଇ ଆସିଛି ମୋ ପରି ମର୍ଯ୍ୟାଦାଭିନ୍ନ ଗମ୍ଭୀର ସ୍ୱଭାବ ବୟସ୍କ ପୁରୁଷର ଲେଖନୀରୁ ସେ ଧ୍ୱନି କିପରି ବା ଝରିତ ହେବ ।" କିନ୍ତୁ ରବୀନ୍ଦ୍ରନାଥ ଅନୁଭବ କରିଛନ୍ତି ଯେ ବଙ୍ଗଳାର ପିଲା ଭୁଲାଣିଆ ଛଡ଼ାମାନ ବିଷୟରେ ଆଲୋଚନା କରିବା ପାଇଁ ପ୍ରବୃତ୍ତ ହୋଇଛନ୍ତି । ତାହାର କାରଣ ତାଙ୍କ ବାଲ୍ୟ ଜୀବନର ମଧୁର ସ୍ମୃତି ତାହା ସହିତ ଜଡ଼ିତ । ରବୀନ୍ଦ୍ରନାଥ ତାଙ୍କ ବାଲ୍ୟ ସ୍ମୃତିକୁ ଯେପରି ସଚେତନ ଭାବରେ ସ୍ମରଣ କରି ତାହାର ରସ ଉପଲବ୍ଧି କରିଛନ୍ତି, ସାଧାରଣ ପାଠକ

ନିକଟରେ ତାହା ସମ୍ପୂର୍ଣ୍ଣ ଅସମ୍ଭବ । ଫଳତଃ ବୟସର ରସାନୁଭୂତି ମଧ୍ୟରେ ଅପରିଣତ ବୟସର ଶୈଶବ ସ୍ମୃତିର ଅନୁଭୂତି ଅଜାଣତରେ ସମସ୍ତଙ୍କ ମନ ଭିତରେ ରହିଥାଏ । କାରଣ ମଣିଷ ହୃଦୟର ରସାନୁଭୂତିର ଅଖଣ୍ଡ ପ୍ରବାହ ଶୈଶବ, ବାଲ୍ୟ, କୈଶୋର, ଯୌବନ ମଧ୍ୟ ଦେଇ ଜୀବନର ଆରମ୍ଭରୁ ପ୍ରବାହିତ ହେଉଥାଏ । ତାହା କେବେ ହେଲେ ଖଣ୍ଡିତ ହୋଇପାଏ ନାହିଁ, ଯେପରି 'ବୃଷ୍ଟି ପଡ଼େ ଟାପୁରୁ ଟୁପୁର ନଦୀଏ ଏଲ ବାନ' ଉକ୍ତିଟିର ଭାବ ଏବଂ କବି ରବୀନ୍ଦ୍ରନାଥଙ୍କ ସମଗ୍ର ଜୀବନକୁ କଭଳି ଭାବରେ ପ୍ରଭାବିତ କରିଥିଲା ସେ ସମ୍ପର୍କରେ ରବୀନ୍ଦ୍ରନାଥ କହିଛନ୍ତି ଯେ—"ଏହି ଉକ୍ତିଟି ଥିଲା ମୋ ଶୈଶବର ମେଘଦୂତ" । ଏହା ଯେ ତାଙ୍କର ବର୍ଷାର ପ୍ରକୃତି ପ୍ରତି ଅନୁରାଗ ଦଶଗୁଣ ବଢ଼ାଇ ଦେଇଥିଲା—ଏଥିରେ ସନ୍ଦେହର ଅବକାଶ ନାହିଁ । ରବୀନ୍ଦ୍ରନାଥ ]] ତାଙ୍କ ସଂଗୃହୀତ ଛଡ଼ା ଗୁଡ଼ିକର ଆଲୋଚନା ସମ୍ପର୍କରେ କହିଛନ୍ତି—"ଏହି ସମସ୍ତ ଛଡ଼ା ଗୁଡ଼ିକ ଭିତରେ ଗୋଟିଏ ପ୍ରକାର ଚିରନ୍ତନତା ଅଛି । କିଏ କେଉଁଠା କେବେ ରଚନା କରିଥିଲା ବା କେଉଁ ତାରିଖରେ ତାହା ରଚିତ ହୋଇଥିଲା ; ତାହା ଜାଣିବା ସମ୍ପୂର୍ଣ୍ଣ ଅସମ୍ଭବ । ଏହା ଚିର ପୁରାତନ ହୋଇ ମଧ୍ୟ ନିତ୍ୟ ନୂତନ" × × ମୁଁ ବୁଝିପାରେ ନାହିଁ ଯେ କାହିଁକି ଏତେ ମହାକାବ୍ୟ, ଖଣ୍ଡକାବ୍ୟ, ଏତେ ତତ୍ତ୍ୱ-କଥା ଓ ମତ ପ୍ରଚାର । ମନୁଷ୍ୟର ଏତେ ପ୍ରାଣମୂର୍ଚ୍ଛା ପ୍ରୟତ୍ନ ଏତେ ଗଳଦ୍‌ଘର୍ମ ବ୍ୟାୟାମ୍ ପ୍ରତିଦିନ ବ୍ୟର୍ଥ ଓ ବିସ୍ମୃତ ହୋଇଯାଉଛି । ଅଥଚ ସେଇ ସମସ୍ତ ଅସଙ୍ଗତ, ଅର୍ଥହୀନ ଓ ଯଦୃଚ୍ଛାକୃତ ଶ୍ଳୋକ ଗୁଡ଼ିକ ଲୋକ ସ୍ମୃତିରେ ଚିରକାଳ ପ୍ରବାହିତ ହୋଇ ଆସୁଛି ।" ଅନେକ ପ୍ରାଚୀନ ଇତିହାସ ଓ ପ୍ରାଚୀନ ସ୍ମୃତିର ପୂର୍ଣ୍ଣ ଅଂଶ ଏହି ସକଳ ଛଡ଼ା ଗୁଡ଼ିକ ମଧ୍ୟରେ ସଂକ୍ଷିପ୍ତ ହୋଇ ରହିଛି । ଯେପରି—"ଏପାର୍ ଗଙ୍ଗା ଓପାର୍ ଗଙ୍ଗା ମଧ୍ୟ ଖାନେରେ, ଚର ମଧ୍ୟେ ବସେ ଅଛେ ଶିବ ସଦାଗର ।" ଅବଶ୍ୟ ବାଳକର କଳ୍ପନା ଏହି ଐତିହାସିକ ଐକ୍ୟ ରଚନା ପାଇଁ ଉତ୍ସୁକ ନୁହେଁ । ତାହା ନିକଟରେ ସମସ୍ତ ହେଉଛି ବର୍ତ୍ତମାନ ଏବଂ ତାହା ନିକଟରେ ବର୍ତ୍ତମାନ ହିଁ ହେଉଛି ଗୌରବ । ପୁନଶ୍ଚ "ନୋଟନ୍ ନୋଟନ୍ ପାୟରା ଗୁଲି ଝୋଟନ୍ ରେଖେଛେ,

ବଡ଼ୋ ସାହେବ ର ବିବି ଗୁଲି ନାଇଚେ ଏସେଛେ” ଯେପରି ମେଘ ସହିତ ମେଘ ଏବଂ ସ୍ୱପ୍ନ ସହିତ ସ୍ୱପ୍ନ ମିଶିଯାଏ ; ଏହି ଛଡ଼ା ଢ଼ମାଳି ଗୁଡ଼ିକ ମଧ୍ୟ ସେହିପରି ଜଡ଼ିତ ଓ ମିଶ୍ରିତ ହୋଇଥାଆନ୍ତି । ଗ୍ରେଟ୍ ପିଲାଟିଏ ଯେପରି ପ୍ରକୃତିର ସୃଜନ, ଛଡ଼ା ଢ଼ମାଳି ମଧ୍ୟ ସେହିପରି ପ୍ରକୃତି ସୃଷ୍ଟ । ରବୀନ୍ଦ୍ରନାଥଙ୍କ ଲୋକ ସାହିତ୍ୟ ସମ୍ପର୍କରେ ଆଲୋଚନାର ଦିଗନ୍ତ ସୁଦୂର ପ୍ରସାରି । କେବଳ ଗୋଟାଏ କଥା ସ୍ପଷ୍ଟ ହୁଏ ଯେ ରବୀନ୍ଦ୍ରନାଥ ହୁଏତ କାବ୍ୟରସ ପ୍ରତି ଆକୃଷ୍ଟ ହୋଇ ବଙ୍ଗଳା ଲୋକ ସାହିତ୍ୟ ଆଲୋଚନାରେ ପ୍ରବୃତ୍ତ ହୋଇଥିଲେ । ରବୀନ୍ଦ୍ରନାଥ ଜଣେ ସମାଜ ବିଜ୍ଞାନୀ ଥିଲେ । ସମାଜ ବିଜ୍ଞାନ ସହିତ ଲୋକସାହିତ୍ୟର ଯେ ଗୋଟିଏ ନିବିଡ଼ ସମ୍ପର୍କ ରହିଛି ତାହା ରବୀନ୍ଦ୍ର ମାନସରେ ଧରା ପଡ଼ିଥିଲା । ପାଶ୍ଚାତ୍ୟ ଲୋକସାହିତ୍ୟ ଗବେଷକଙ୍କ ଚେତନାରେ ଏହା ଭିତ୍ତି ସ୍ଥାପନ କରିଥିଲା କହିଲେ ଅତ୍ୟୁକ୍ତି ହେବ ନାହିଁ ।



# କବିତା କ'ଣ ଏବଂ କାହିଁକି

କବିତା ଅପାର୍ଥିବ ଏକ ରହସ୍ୟରେ ସମାଚ୍ଛନ୍ନ, ବିଚିତ୍ର ଏକ ଶକ୍ତି ପ୍ରଭାବରେ ଜୀବନ୍ତ । ସେ ଶକ୍ତି ହୁଏତ ଆମର ରସଧ୍ୱନି, ନ ହେଲେ ପାଶ୍ଚାତ୍ୟର Mysterious Something (John Stuart Mill) ସେହି ଶକ୍ତି ହିଁ ପାଠକ ବା ଶ୍ରୋତାର ସୂକ୍ଷ୍ମକୋମଳ ଅନୁଭୂତିକୁ ପରିସ୍ପନ୍ଦିତ କରିଥାଏ । ସେହି ଶକ୍ତି ମାନସିଂହଙ୍କ ଧୂପରେ ଯେପରି ଅଛି ଠିକ୍ ସେହିପରି ଅଛି 'ମେଘଦୂତ'ରେ ଏବଂ ସେକ୍‌ସପିଅରଙ୍କ ଟ୍ରାଜେଡ଼ିମାନଙ୍କରେ । ଅବଶ୍ୟ ଏ ଶକ୍ତି କବିତାର ଅନନ୍ୟସାଧାରଣ ପ୍ରକୃତି ନୁହେଁ । ତେବେ ଏଠାରେ ସ୍ମରଣ ରଖିବାକୁ ହେବ ଯେ କବିତାର ଅନ୍ୟାନ୍ୟ ବିଭାଗ ଅପେକ୍ଷା ତାହାର ଆବେଦନ କିଛିଟା ଅଧିକ ଉଷ୍ମ ଓ ଗଭୀର । ଯେଉଁଠି ପଦ୍ୟ ରଚନା ଏହି ଅଦ୍ଭୁତ ଶକ୍ତିରେ ଉଦ୍‌ବୁଦ୍ଧ ହୋଇ ପାଠକ ବା ଶ୍ରୋତାର ସକଳ ଅସ୍ତିତ୍ୱକୁ ଅଭିଭୂତ କରି ଉଷ୍ମ ଭାବାବେଗ ସୃଜି ପାରେ ନାହିଁ, ସେଠି ତାହା ଆଉ ଯାହା ହୋଇ ପାରେ କିନ୍ତୁ କବିତା ହୋଇ ପାରିବ ନାହିଁ । ସେହି ଶକ୍ତିକୁ ହୃଦୟରେ ଭରି ଉପଲବ୍‌ଧି କରିବାକୁ ହେଲେ ଶ୍ରୋତା ଓ ପାଠକ ପ୍ରାଣରେ ମଧ୍ୟ କବିତ୍ୱର ପ୍ରୟୋଜନ । Joubert ଆମକୁ ସତର୍କ କରାଇ ଦେଇଛନ୍ତି "You will find poetry nowhere unless you bring some with you" । କବିତ୍ୱ ଥିଲେ ହିଁ ଚାରିପାଖର ଅଜସ୍ର ବାଧାକୁ ଅତିକ୍ରମ ନ କଲେ କବିତାକୁ ଛୁଇଁ ହୁଏ ନାହିଁ । କବିତା ଉପଲବ୍‌ଧି କ୍ଷେତ୍ରରେ ଆମର ଅଜସ୍ର ବାଧା—ପ୍ରାତ୍ୟହିକ ଜୀବନଯାତ୍ରାର ତୁଚ୍ଛାତିତୁଚ୍ଛ ଘଟଣା ଓ ସୁଖ ଦୁଃଖ, ଛୋଟବଡ଼ ଅନେକ ସ୍ମୃତି ଜଞ୍ଜାଳ ହୃଦୟକୁ ଚହଲାଏ ।

ବେଳେବେଳେ ବାହାର ଓ ଭିତରର ପ୍ରକୃତି କିଛି ଆଖିକୁ ଦେଖାଯାଏ ନାହିଁ, ସବୁ ଅସ୍ପଷ୍ଟ, ସବୁ ଅର୍ଥହୀନ । ସବୁ ଯେମିତି

ସୀମାହୀନ, ଅନ୍ତହୀନ ପ୍ରହେଳିକାର ପ୍ରଚ୍ଛନ୍ନ ତର୍ଜମା । ଗୋଟିଏ ଅଶ୍ରୁବିନ୍ଦୁ କେଉଁଠି ଟଳ ଟଳ ହୋଇ ଉଠେ । ବେଦନା, ଅଶ୍ରୁ, ଅଲୁହା ବ୍ୟଥା, ନୀରବତା, ସବୁଗୁଡ଼ିକ ଏକାକାର ହୋଇଯାଏ ଅବୋଧ ନୀରବତାର ଅଜଣା କୁହୁକରେ । ସ୍ଥିତି ଓ ବସ୍ତୁ ଭିତରେ, ଚେତନା ଓ ଦ୍ରବ୍ୟ ଭିତରେ ଦେଖାଦିଏ ଅଦମ୍ୟ ସାଗର । ସବୁ ଲାଗେ ଉଦାସୀନ ଅର୍ଥହୀନ —ଏ ଜୀବନ, ସମାଜ, ମଣିଷର ଇତିହାସ ଓ ଅସୀମ ବିଶ୍ୱ । କୋଳାହଳ ମରିଯାଏ । କଥାବର୍ତ୍ତା କିଛି କାନରେ ପଡ଼େନି, ଶୁଭେ ଖାଲି ମହାନୀରବତାର ଆଦିମ ଶ୍ଲୋକ, ଦିଶେ ଖାଲି ମହାବେଦନାର ପୁରାତନୀ ଅଶ୍ରୁ ।

ଏହି ଦୁଇଟି ଅନୁଭୂତି ମାନସିକ ଅନ୍ତର୍ଦ୍ୱନ୍ଦ୍ୱର ମୌଳିକ କଥା-ବସ୍ତୁ । ହୃଦୟ ଓ ମନର ଗଭୀରତମ ପ୍ରଦେଶରେ ଯେଉଁ ସ୍ୱପ୍ନ, ଯେଉଁ ଅଶ୍ରୁ ଓ ଯେଉଁ ବେଦନାର ଉଚ୍ଛ୍ୱାସ, ଯେଉଁ ନୀରବତାର ବ୍ୟାପ୍ତି ତାହାରି ଭିତରେ କବିତାର ସାର୍ବଜନୀନତା । ବାହାରର ପ୍ରକୃତି, ସମାଜ ଓ ମାନସିକ ସ୍ଥିତି ଭିତରେ ଘୂରି ଘୂରି ନିଜକୁ ହଜାଇ ହଜାଇ ପୁଣି ସେହି କେନ୍ଦ୍ର ବିନ୍ଦୁକୁ, ସେହି ଅଶ୍ରୁକୁ ଫେରିବା ହିଁ କବିତା । Wordsworth କହନ୍ତି କବିତା କିଛିଟା ଉଷ୍ମ ଉତ୍ତେଜନା ସୃଷ୍ଟିକରେ । ସେଥିରେ ଥାଏ ଆନନ୍ଦ ଓ ବିସ୍ମୟର ଲୀଳା, ମନର ଉଷ୍ମ ଭାବାବେଗକୁ ସାଧାରଣ ଅନୁଭବ ସହିତ ସମାନୁପାତରେ ମିଳାଇ ଦେଇ ସଂଯତ ଓ ସୁନ୍ଦର କରିଦିଏ । ଭାଷାର ଛନ୍ଦ ମଧୁର ଆୟୋଜନ ଓ ପଦ୍ୟ ବିନ୍ୟାସର ଏହି ମୃଦୁ ଅଥଚ ନିରବଚ୍ଛିନ୍ନ ଆନନ୍ଦ ବିସ୍ମୟର ନିୟନ୍ତ୍ରଣ କବିତାକୁ କେବଳ ସୁଖସେବ୍ୟ କରେ ନାହିଁ, ତନ୍ନିହିତ ଭାବର ଲୌକିକତାକୁ ସମାଚ୍ଛନ୍ନ କରି ପାଠକର ଚିତ୍ତଭୂମିକୁ ନିର୍ମଳ ଆନନ୍ଦରେ ରସାବିଷ୍ଟ କରେ । ରସକୁ ଆକ୍ଷିପ୍ତ କରେ ପଦ୍ୟର ମାଧୁର୍ଯ୍ୟ । କାନକୁ ତାହା ସଙ୍ଗୀତ ଯୋଗାଇବା ସଙ୍ଗେ ସଙ୍ଗେ ମନକୁ ବିସ୍ମୟ ବିହ୍ୱଳିତ କରେ । କବିତାର ଆବେଦନ କେବଳ କାନରେ ନୁହେଁ ମନରେ ବି । ମଣିଷର ଭାଷା ହୃଦୟର ଉଷ୍ମ ଭାବାବେଗକୁ ପରିପୂର୍ଣ୍ଣ ଭାବରେ ବ୍ୟକ୍ତ କରିବାକୁ ପର୍ଯ୍ୟାପ୍ତ ନୁହେଁ ।

"ବେଳେ ବେଳେ ମନେ ହୁଏ ଶବ୍ଦ ଗୁଡ଼ିକ ଗୋଟିଏ ଗୋଟିଏ ଖେଳନା, କଣ୍ଢେଇ, କାଚମାଳ । ସେ ଗୁଡ଼ିକ ସଜେଇ ହେବ ନାନା ରଙ୍ଗରେ, ନାନା ବର୍ଣ୍ଣରେ, ନାନା ଆକୃତି ଓ ସଜ୍ଜାରେ । ପୁଣି ବେଳେ ବେଳେ ମନେ ହୁଏ ଶବ୍ଦ ଗୁଡ଼ିକ ବାଡି ଓଗାଳ ଛୁଡ଼ା ହୋଇଛନ୍ତି ଅନ୍ଧାର ରାତିର ଅୁଣ୍ଡା ଗଛ ପରି ଭୀଷଣ ଓ ଭୟପ୍ରଦ ଭାବରେ । ରୁଚି ପିଟି ପଳାଇବାକୁ ହୁଏ । ଚନ୍ଦ୍ରାର ଜାଲକୁ ଟାଣି ଟାଣି କୂଳକୁ ଆଣିବା ପ୍ରାୟ ଅସମ୍ଭବ ମନେ ହୁଏ ।" ଏକ ସ୍ୱତନ୍ତ୍ର ଭିନ୍ନ ଧରଣର ଆଖି ନେଇ କବି ଖୋଜେଁ ତାର ସ୍ବରକଣ୍ଠର ଅବସ୍ଥିତିକୁ ଏବଂ ପ୍ରତ୍ୟେକ ମୁହୂର୍ତ୍ତରେ ଫୁଟି ଉଠୁଥିବା ବହୁବିଧ ଶବ୍ଦର ଫୁଲରୁ ସେ ବାଛିନିଏ ନିଜ ପାଇଁ ଯାହା ଲୋଡ଼ା, ଅବଶ୍ୟ ଅତ୍ୟନ୍ତ ସଚେତନ ଭାବରେ । ବେଳେବେଳେ ଭାବ ସମ୍ବଳିତ ଶବ୍ଦର ତରଙ୍ଗ ମଧ୍ୟ ଧାଇଁ ଆସେ ତାର ଅବଚେତନ ସତ୍ତାର ଆଲୋକିତ ଗହ୍ବର ଭିତରକୁ ଏବଂ ମନ୍ଥ ଉତ୍ତରଣ ପରି ଆପଣା ଛାଏଁ ତାହାର ଉଦ୍‌ଗୀରଣ ହୋଇଯାଏ ।

ପ୍ରେମୋନ୍ମତ୍ତ କ୍ରୌଞ୍ଚ ମିଥୁନର ସୁଖାଳାପରେ ବ୍ୟାଘାତ ଆଣିଥିବା ବ୍ୟାଧ ବିରୁଦ୍ଧରେ ଦୁଃଖ ଓ କ୍ରୋଧଜନିତ ଯେଉଁ ଅଗ୍ନି ଅଭିଶାପ ଆଦି-କବି ବାଲ୍ମୀକିଙ୍କ ପ୍ରାଣରେ ସୃଷ୍ଟି ହୋଇଥିଲା, ତାହା କବିର ସ୍ରଷ୍ଟାମାନସ ଭିତର ଦେଇ ଶ୍ଳୋକ ଆକାରରେ ଆତ୍ମପ୍ରକାଶ କରିବା ପରେ କ୍ରୋଧ ବା ଅଭିଶାପ ଆକାରରେ ନ ରହି ଆନନ୍ଦ ଦାନ କରିବାକୁ ଉଦ୍ଦିଷ୍ଟ ହେଲା । କବିର ବ୍ୟକ୍ତିଗତ ଦୁଃଖ ଏଠାରେ ଅଲୌକିକତା ପ୍ରାପ୍ତହୋଇ ସାର୍ବଜନୀନ କରୁଣ ରସରେ ପରିଣତ ହେଲା । ମଣିଷ ହୃଦୟର ଏହି ଗଭୀର କ୍ଷତ ପୀଡ଼ିତ ପ୍ରତି ପ୍ରାଣର ସ୍ୱାଭାବିକ ସହାନୁଭୂତି ଓ ଅଶ୍ରୁ ତାହାର ପରିପୂରଣ ଓ ସାନ୍ତ୍ବନା ପାଇଁ ସୃଷ୍ଟି ହେଲା କବିତା ଓ ସାହିତ୍ୟ । କବି ପ୍ରାଣର ସେହି ମୁହୂର୍ତ୍ତକର ବେଦନା ପରିଣତ ହେଲା ମଣିଷ ଜାତିର ଚିରନ୍ତନ ବ୍ୟଥାରେ କିନ୍ତୁ କ୍ରୌଞ୍ଚର ମୃତ୍ୟୁ ବେଦନା କବି ପ୍ରାଣରେ ଯେଉଁ ଶୋକ ବା କ୍ରୋଧର ଉଦ୍ରେକ କରିଥିଲା ଶ୍ଳୋକ ରଚନା କରିବା ସମୟରେ ସେଇ ଶୋକ ବା କ୍ରୋଧ ନିଜ ସ୍ୱାଭାବିକ୍ ଅବସ୍ଥାରେ ହୁଏତ ନଥିଲା । ଥିଲା ସାତ୍ତ୍ବିକ ଭାବାପନ୍ନ ଓ ସୃଷ୍ଟିକ୍ଷମ କବିମାନସ ମଧ୍ୟରେ ଏକ ଉର୍ଦ୍ଧ୍ବତର ଚେତନାର ଅଂଶ ହୋଇ । ଶୋକ ବା କ୍ରୋଧଜନିତ

ଚିତ୍ତବିକ୍ଷୁବ୍ଧ କବିର ସେତେବେଳେ ନ ଥିଲା, ଥିଲା କବି ଚିତ୍ତର ଏକ ନିର୍ମଳ ସହଜ, ପ୍ରଶାନ୍ତ ଓ ଧ୍ୟାନଗମ୍ଭୀର ସ୍ୱଭାବ । ଏହି ଚିତ୍ତପ୍ରଶାନ୍ତି ଯେତେ ପର୍ଯ୍ୟନ୍ତ ଆସି ନଥାଏ ତରଙ୍ଗାକୁଳ ଚିତ୍ତର ବିକ୍ଷୁବ୍ଧ ଅବସ୍ଥା କବି ଯେପର୍ଯ୍ୟନ୍ତ ଅତିକ୍ରମ କରି ନଥାଏ ସେ ପର୍ଯ୍ୟନ୍ତ ସୃଷ୍ଟି କରିବାକୁ ସେ ଅକ୍ଷମ । ପ୍ରତ୍ୟେକ ସୃଷ୍ଟିର ମୂଳରେ ଶ୍ରମ, ସାଧନା ଓ ବେଦନା ଯେପରି ରହିଛି—କବିର କବିତା ସୃଷ୍ଟି ମୂଳରେ ମଧ୍ୟ ସେହିପରି ଶ୍ରମ ସାଧନା ଓ ବେଦନା ବିଦ୍ୟମାନ । ଦିନେ ହୁଏତ କବି ଭାବିଥିଲା ତା'ର ଚାରିପାଖର ବିଶାଳ ବିଶ୍ୱ, ଅସୀମ ଆକାଶ, ଅଗଣିତ ତାରକା, ମାଟି ଓ ଧୂଳିର ପୃଥିବୀ, ମେଘମୟ ମୁହୂର୍ତ୍ତ—ଏ ସବୁର ଏକ ପୁନର୍ନିର୍ମାଣ କରିବ ତା'ର କବିତା । ଗଢ଼ିବ ସେଥିରେ ଆଶା ବିଶ୍ୱାସର ବେଦନା ଅନୁଭବର ଏକ କୁଟୀର । ପୃଥିବୀକୁ ଦେବ ନୂଆ ରୂପ । ପ୍ରକୃତିକୁ ଗଢ଼ିବ ନିଜ ମନଲାଖି କରି । ସେ ଆଶା ଦିନେ ପରିପାର୍ଶ୍ୱର ଧକ୍କାରେ ଦୂରେଇଗଲା ।

ଏକ ଅଲିଖିତ ଯନ୍ତ୍ରଣା କବିର ସାମଗ୍ରିକ ସତ୍ତାକୁ ଅହରହ କେନ୍ଦ୍ର କରି ବୁଲେ ଏବଂ ଏହାର ଝଲକ କବିର ଚିନ୍ତାଶକ୍ତିକୁ ଉଜ୍ଜ୍ୱଳ କରେ । ଅସହାୟ ଶୂନ୍ୟତାବୋଧ ବେଳେ ବେଳେ କବି ମାନସକୁ ଆକ୍ରାନ୍ତ କରେ ଏବଂ ଏହି ଶୂନ୍ୟତାବୋଧକୁ ଅତିକ୍ରାନ୍ତ କରିବା ପରେ ସିଂହାବଲୋକନ କଲେ ଜଣାଯିବ ଘୁଞ୍ଚି ଆସିଥିବା ଶୂନ୍ୟତାବୋଧର ଗର୍ଭରୁ ଜନ୍ମ ନେଇଛି ଏକ ବିଚିତ୍ର ଅନୁଭୂତି ସମ୍ପନ୍ନ ଜୀବନ । କବି ଏହି ଜୀବନ ପ୍ରତି ମୋହାବିଷ୍ଟ ହୋଇପଡ଼େ ଯାହାକୁ ଅନ୍ୟ ବ୍ୟକ୍ତି ଅପ୍ରୟୋଜନ ଭାବି ସହଜରେ ଏଡ଼ାଇଯାଏ । ଯାହାକୁ ଅନ୍ୟମାନେ ଜୀବନର ପରିତ୍ୟାଜ୍ୟ ବସ୍ତୁ ବୋଲି ଭାବନ୍ତି କବି ତାହାକୁ ଆଗ୍ରହରେ ଗ୍ରହଣ କରେ ।

ପ୍ରତ୍ୟେକ କବିତାର କେତୋଟି ଆୟତନ ଅଛି । ପ୍ରାଥମିକ ହେଲା ଏହାର ସୌନ୍ଦର୍ଯ୍ୟବତ୍ତା ଓ ଇନ୍ଦ୍ରିୟାନୁଭୂତ (sensuous) ଗୁଣ । ଏ ଭିତରେ ଶବ୍ଦର ଗୁଞ୍ଜନ ଓ ତଦ୍‌ଜନିତ ସଙ୍ଗୀତ, ସାଙ୍ଗଠନିକ ପରିପକ୍ୱତା, ରୂପକଳ୍ପର ଶାଣିତ ଓ ମାର୍ଜିତ ବିଭବ, ପ୍ରକାଶଭଙ୍ଗୀର

ବୈଚିତ୍ର୍ୟ ଓ ତୀକ୍ଷ୍ଣତା ଅନ୍ତର୍ଭୁକ୍ତ । ବହିଃପ୍ରକୃତି ହେଲା ଏହାର ଅର୍ଥ ପରିପ୍ରକାଶିତ କଥାବସ୍ତୁର ସୁନ୍ଦର ଓ ସୁସଜ୍ଜିତ ଯାନ୍ତ୍ରିକରଣ, କବିର ମାନସିକ ଚିନ୍ତାଧାରା, ଆବେଗ ଓ ଅନୁଭୂତିର ପରିଚୟ । ଅନ୍ତଃପ୍ରକୃତି ଅନୁଭୂତି ଓ ଭାବରାଜ୍ୟର ପରିସୀମା ବାହାରେ ଥିବା ବାସ୍ତବତାର ଏକ ଆଭାସ । ଜୀବନ, ସମାଜ ବା ପୃଥିବୀର ଯଥାର୍ଥତାର ଗୋଟାଏ ମୂର୍ଚ୍ଛନା । ସେ ବାସ୍ତବତା ଦର୍ଶନତତ୍ତ୍ୱର ପରମ ହୋଇପାରେ, ଧର୍ମତତ୍ତ୍ୱର ଭଗବାନ ହୋଇପାରେ ବା ସାଧାରଣ ଜୀବନର ଆଦର୍ଶ, ଜୀଇବାର ମାନେ ବା ପୁଲକ ହୋଇପାରେ; କିନ୍ତୁ ତାହା କବିତାର ଗଭୀରତମ ଅଭିବ୍ୟକ୍ତି ହୁଏ । ଭାରତୀୟ ଚିନ୍ତାଧାରା ଏହି ଶେଷୋକ୍ତ ବିଭବ ଉପରେ ଅତିରିକ୍ତ ଓ ଅସହ୍ୟ ଗୁରୁତ୍ୱ ଆରୋପ କରିଥିଲା; କିନ୍ତୁ ଏହା ଯେ କବିତାର ଚରମ ସାର୍ଥକତା ଏଥିରେ ସନ୍ଦେହ ନାହିଁ । ସେଇ ଏକା କଥା ଶୁଣାଯାଏ ଆମେରିକାର ଖ୍ୟାତନାମା କବି ରବର୍ଟ ଫ୍ରଷ୍ଟଙ୍କ ଠାରୁ । "A poem begins in delight and ends in wisdom" । ତେଣୁ କବିର ବ୍ୟକ୍ତିଗତ ଜୀବନ କ୍ଷେତ୍ରରେ ବିଭିନ୍ନ ଧରଣର ବୈଚିତ୍ର୍ୟମୟ ଅନୁଭୂତି, ଅଭିଜ୍ଞତା, ଆଘାତ ଓ ସଂଘର୍ଷ କବି ପ୍ରତିଭାର ପରିପୁଷ୍ଟି ପାଇଁ ଯେପରି ପ୍ରୟୋଜନ ହୁଏ । ସୃଷ୍ଟିର ଅଭିବ୍ୟକ୍ତି ପାଇଁ କବିର ସ୍ରଷ୍ଟା-ମାନସ ସହିତ ସେଇ ସକଳ ଅନୁଭୂତିର ସହଯୋଗ ଓ ସାମଞ୍ଜସ୍ୟ ସେହିପରି ଅନେକ ସମୟରେ ଅପରିହାର୍ଯ୍ୟ ବୋଲି ମନେ ହୋଇଥାଏ ।

କବିତାର ଅଭିମୁଖ୍ୟ ଓ ଆଦର୍ଶ ସମ୍ପର୍କରେ ଏତିକି କହିଲେ ଯଥେଷ୍ଟ ହେବ ଯେ ପ୍ରତ୍ୟେକ ଯୁଗ ନିଜର ଶିଳ୍ପ ସୃଷ୍ଟିକୁ ନବତମ, ବିଚିତ୍ର, ବର୍ଣ୍ଣିଳ ବୋଲି ଭାବିଥାଏ । କାରଣ ମଣିଷ ଜୀବନରେ କିଛି ଗୋଟାଏ ନିରବଚ୍ଛିନ୍ନତା ଅଛି ଯାହା ଯୁଗ, ଦେଶ, କାଳ ବା ପାତ୍ରରେ ସୀମିତ ହୋଇ ପାରେନା । ଯୁଗରୁଚି ବଦଳେ । ଜୀବନ ଓ ସମାଜରେ ସମସ୍ୟା, ଦୃଷ୍ଟିଭଙ୍ଗୀ ଓ ଆକୃତି ପରିବର୍ତ୍ତିତ ହୁଏ । ତେଣୁ କବିତାରେ ପରିବର୍ତ୍ତନ ଆସିବା ସ୍ୱାଭାବିକ । ଏ ପରିବର୍ତ୍ତନ ଆସେ ମୁଖ୍ୟତଃ ପ୍ରକାଶଭଙ୍ଗୀରେ ଏବଂ ଅନେକାଂଶରେ ବୈପ୍ଲବିକ ଭାବରେ କଥାବସ୍ତୁର ପରିବର୍ତ୍ତନରେ । ପ୍ରଥମ ମହାଯୁଦ୍ଧ ପରର ୟୁରୋପ ଧ୍ୱସ୍ତ,

ବିଧ୍ୱସ୍ତ ସହର, ଗାଁ ଧୂଳି ଧୂସରିତ ଜୀବନ ଓ ତଜ୍ଜନିତ ସାମୂହିକ ଓ ବ୍ୟକ୍ତିଗତ ବିଫଳତା, ହତାଶ, ଦୁର୍ବହ ଭାବନା, ହିଗହଜା କ୍ଳାନ୍ତି 'ଏଲିଅଟ୍'ଙ୍କ 'ଓ୍ୱେଷ୍ଟଲ୍ୟାଣ୍ଡ' ବା 'ହଲୋମ୍ୟାନ'ରେ ପ୍ରତିଫଳିତ ହୋଇଥିଲା । ଫରାସୀ ରଙ୍ଗମଞ୍ଚର ନାଟ୍ୟସୀମାନଙ୍କ ପ୍ରତି ବିରୋଧ ସାରତର, କାମ୍ୟୁଙ୍କ ସାହିତ୍ୟ କୃତିର ମୁଖ୍ୟ ପ୍ରେରଣା ଯୋଗାଇଲା । ପ୍ରତ୍ୟେକ ଶିଳ୍ପୀର ସଚେତନ ମନ ପୃଥିବୀର ପ୍ରତ୍ୟେକ ମଣିଷ, ପ୍ରତ୍ୟେକ ଚିନ୍ତାଧାରା ସହିତ ଗଭୀରଭାବେ ଜଡ଼ିତ । କିନ୍ତୁ ପ୍ରତ୍ୟେକ ସମାଜର ଏକ ସୁଗଠିତ ସାଂସ୍କୃତିକ ପରମ୍ପରା, ଐତିହ୍ୟ ଅଛି ଯାହାର ପୃଷ୍ଠଭୂମିରେ କଳାବିତ୍ ସୃଷ୍ଟିକରେ ତାର କଳା ।

ହିନ୍ଦୁ ଧର୍ମ, ନୈତିକତା ଓ ପୁରାଣ ଥିଲା କବିତାର ଆତ୍ମା । ଆମ ଓଡ଼ିଆ ସାହିତ୍ୟରେ ରାମାୟଣ, ମହାଭାରତ ଓ ଭାଗବତ ଶତାବ୍ଦୀ ଶତାବ୍ଦୀ ଧରି ଯୋଗାଇଥିଲା ସାହିତ୍ୟର ଖୋରାକ । ସାମାଜିକ ଅବ୍ୟବସ୍ଥା, ଶ୍ରେଣୀ ସଂଘର୍ଷ, ଆଧୁନିକ ଗଣ ସମାଜରେ ବ୍ୟକ୍ତିର ଅସହାୟତା, ବ୍ୟର୍ଥତା ଏବଂ ବିଫଳତା ନେଇ ଅନେକ କବିତା ଲେଖା ହୋଇଛି । ସାଧାରଣ ଭାବରେ କଳାକାର ଆଜି ହିଂସ୍ର ସମାଜ ବିଷୟରେ ସଚେତନ । ଅନ୍ୟ ପାଇଁ ଉଦାସୀନତା ଏ ଯୁଗର ଗୋଟାଏ ପ୍ରଧାନ ଲକ୍ଷଣ । ଏ ଉଦାସୀନତା ବିଭିନ୍ନ ସାମାଜିକ କାରଣରୁ ଉଦ୍ଭବ । ଏଇଠି ତ ଆଖି ଆଗରେ ନୂଆଖାଲି କଲିକତାରେ ସେହିନ ମଣିଷ ପ୍ରତି ମଣିଷ କେମିତି ଆଖି ବୁଜି ଦେଲା । ମାନ୍ଦ୍ରାଜରେ ଭାଷା ଆନ୍ଦୋଳନରେ କଅଁରେ ଜାଳି ମଣିଷକୁ ପୋଡ଼ା ହୋଇ ପାରିଛି । ହତ୍ୟା ଓ ଆତ୍ମହତ୍ୟା ଆଜି ଏଠି ଅତି ସାଧାରଣ ଘଟଣା । ସେଇ 'ମିଥ୍ ଅଫ୍ ସିସିଫସ୍' ଓ 'ରେବେଲ'ର ସମସ୍ୟା । ଜୀବନରେ ମୂଲ୍ୟ ଉତ୍ପନ୍ନ—ସମାଜରେ ଏତେ ବେଶୀ ପ୍ରତ୍ୟୟହୀନତା ଯେ କେହି କାହା କଥା ଶୁଣିବାକୁ ପ୍ରସ୍ତୁତ ନୁହଁନ୍ତି । ଅଗଣିତ ମଣିଷର କୋଟରଗତ ଆଖି, ନଳି ନଳି ଗୋଡ଼, ମରୁଡ଼ିରେ ଜଳୁଥିବା ପୃଥିବୀ ଆଉ ମଣିଷ । ତା ସହିତ ସମସ୍ତଙ୍କର ଔଦାସୀନ୍ୟ ଯେମିତି କିଛି ଘଟିନି । ସେହି ଆତ୍ମକୈନ୍ଦ୍ରିକତା, ସ୍ୱାର୍ଥପରତା । କବି ଜଣେ କଳାକାର । ସେ ବି

ସମାଜରେ ଜଣେ ନାଗରିକ । ସେ ବି ଗୃହକର୍ତ୍ତା କରେ ଏବଂ ଅଣନିଶ୍ୱାସୀ ଜୀବନ ଭିତରେ ଟାଇମ୍‌ଟେବୁଲ୍‌ର ରେଲିଂ ଧରି ଝୁଲି ଝୁଲି ଯାଏ ଅଫିସ । କଂଟ୍ରୋଲ ଦୋକାନ ସାମ୍ନାରେ ଲମ୍ବା କ୍ୟୁରେ ଛିଡ଼ାହୋଇ ସେ ଜଣେ ନେବି ଫୁଲ୍ । କାମ୍ୟୁଙ୍କ ଭାଷାରେ ଆମ ସମୟର କଳାକାର ମନେ ହେଉଛନ୍ତି ସତେ ଯେମିତି ଊନବିଂଶ ଶତାବ୍ଦୀର ସମୟର ଅନୁତପ୍ତ ବିଚାରପତି । ସେମାନଙ୍କ ଦୋଷୀ ବିବେକ କିନ୍ତୁ ସେମାନଙ୍କ ଆତ୍ମରକ୍ଷା ଧୂଳି ଓ ଅଙ୍ଗାରରେ । ବିପ୍ଳବର ସ୍ଲୋଗାନ ଭିତରେ ନୁହେଁ—କମ୍ବା ରୋମାଣ୍ଟିକ ଇଗୋର ଆଇଭରି ଟାୱାରରେ ନୁହେଁ । ଏ ଉଭୟ ସ୍ଥାନରେ କଳାକାର ସବୁଦିନ ରହି ପାରେନି । ଅଙ୍ଗାରର ମାନେ ସେ ଖୋଜିବ, ସ୍ଲୋଗାନର ଯଥାର୍ଥ୍ୟ ସିଏ ଖୋଜିବ । ଆଜି ସେମାନେ ସେ ଯଥାର୍ଥ୍ୟ ଖାଲି ବିପ୍ଳବରେ ନୁହେଁ, ବିଦ୍ରୋହରେ ନୁହେଁ । ସେ ଅର୍ଥ ଦେବ ଜୀବନକୁ ସେନ୍ହରେ, ବଞ୍ଚିବାର ସୁଆଦରେ, ମରିବାର ଗୌରବରେ । ଆଜିର କବିତା ନିଶ୍ଚୟ ଫେରିବ ସାଧାରଣ ଜୀବନର ଅତି ସାଧାରଣ କଥାବସ୍ତୁକୁ । ତାକୁ ପ୍ରକାଶ କରିବା ପାଇଁ ସେ ମିଥ୍, ସମାଜତତ୍ତ୍ୱ, ପୌରାଣିକ ଆଖ୍ୟାୟିକା, ଚିତ୍ରକଳ୍ପ, ରୂପକ, ପ୍ରତୀକ ବ୍ୟବହାର କରିପାରେ । କବିତା ଆଜି ସେହି ସାଧାରଣ ଜୀବନର କଥା କହୁ । ତାଙ୍କରି ମୀରବତାକୁ ସମ୍ମାନ ଦେଉ । କବିତା ଦୃଢ଼ ସ୍ୱରରେ ଅଥଚ ଧୀର ଗମ୍ଭୀର ଭାବରେ କହି ଶିଖୁ ଯେ ମଣିଷ ଯେ କେବଳ ଆଜି ବଞ୍ଚିବ, ସବୁ ଭୟ, ସବୁ ବିପଦ, ସବୁ ଯୁଦ୍ଧ, ସବୁ ଆଣବିକ ବିସ୍ଫୋରଣକୁ ବିଦ୍ରୂପ କରି ହସିବ କେବଳ ତା ନୁହେଁ ; ମଣିଷ ସବୁ ଦୁଃଖ ଦୁର୍ବିପାକକୁ ଜୟ କରି ପାରିବ, କାରଣ ସେ ବଞ୍ଚିବାର କଳା ଶିଖି ପାରିଛି ଓ ପାରିବ ।

କବିତା ଆଜି ସମସ୍ତଙ୍କୁ କହି ରଖୁ ଯେ ସେ କାହାରି ଶତ୍ରୁ ନୁହେଁ । ସେ ସମସ୍ତଙ୍କର ବନ୍ଧୁ । କବିତା ସ୍ଲୋଗାନ ନ ଦେଉ । ହାଟ ବଜାରରେ ପାଟିତୁଣ୍ଡ ହୋ ହା ନ କରୁ । ମୀରବରେ ସେ ଦେଖାଇ ଦେଉ ଯେ ଜୀବନରେ ଗୋଟିଏ ବିଶେଷ ଅର୍ଥ ଅଛି । ଯାହା ହସ କାନ୍ଦ, ଯୁଦ୍ଧ, ବିଭୀଷିକା, ବିଫଳତା ଓ ହତାଶାର ପରିସୀମାର ବାହାରେ ଚିର

ଭାସ୍ୱର, ଚିର ଘାସ୍ତ, ସାହିତ୍ୟ ପ୍ରାଣର ସୃଷ୍ଟି, ହୃଦୟର ଆବେଗ ସମ୍ଭୂତ ଓ ମାନସିକ ଚିନ୍ତା ନିୟନ୍ତ୍ରିତ । ମଣିଷକୁ ତାର ସଂସ୍କୃତି, ଐତିହ୍ୟ ସମ୍ପର୍କରେ ସଚେତନ କରାଇ ଚରମ ସ୍ୱାର୍ଥତ୍ୟାଗ ବାଟରେ ସାହିତ୍ୟ ନିଶ୍ଚୟ ଆଗେଇ ନେଇପାରେ । କିନ୍ତୁ ଏସବୁ ଉପର ଠାଉରିଆ ଖାମ୍-ଖିଆଲ ସ୍ଲୋଗାନ୍ ଦେଇ ନୁହେଁ ।

ସାର୍ଥକ କବିତାରେ ଭାଷା ଓ ଭାବ ପ୍ରକାଶିତ ବାସ୍ତବତା ଓ ପ୍ରକାଶଭଙ୍ଗୀ ଏକ ଓ ଅଭିନ୍ନ । ଇମେଜ୍ ଓ ସିମ୍ବଲ ଭାଷାକୁ ଏକ ଦୃଷ୍ଟିଭଙ୍ଗୀ ଓ ଶକ୍ତି ଦିଏ । ଆଧୁନିକ କବିତାରେ ବ୍ୟବହୃତ ଚିତ୍ରକଳ୍ପ ଓ ପ୍ରତୀକ ଅନେକ ସମୟରେ କବିର ଆତ୍ମକୈନ୍ଦ୍ରିକତାରୁ ଉଦ୍ଭୂତ ଯେ ସେଗୁଡ଼ିକ ବୁଝିବା ଅସମ୍ଭବ ହୋଇପଡ଼େ । ଆମେ ଯଦି ସାଧାରଣ ଜୀବନ, ପୌରାଣିକ କଥାବସ୍ତୁ, ଆମର ମିଥ୍, ସଂସ୍କାର, ଐତିହ୍ୟ ଏ ସବୁଥିରୁ ଚିତ୍ରକଳ୍ପ, ରୂପକ ସଂଗ୍ରହ କରିବାର ପ୍ରୟାସ କରୁ; ତାହା ନିଶ୍ଚୟ ଫଳପ୍ରଦ ହେବ ।

ଆଧୁନିକ କବିତାରେ ଚିନ୍ତାର ପ୍ରାବଲ୍ୟ ଓ ହୃଦୟର ଅଭାବ ବିଷୟ ଅଭିଯୋଗ କରିଥାନ୍ତି । ହୃଦୟର ଉଚ୍ଛ୍ୱାସକୁ ପ୍ରକୃତ ଭାବରେ ବୁଝିବା ପାଇଁ ମନର ଆବଶ୍ୟକତା ଅଛି ଓ ମନର ଚିନ୍ତାଧାରାକୁ ରସାଳ କରିବା ପାଇଁ ହୃଦୟର ଆବଶ୍ୟକତା ଅସ୍ୱୀକାର କରି ହେବ ନାହିଁ । ଆମର ପ୍ରତି ମୁହୂର୍ତ୍ତର ଚିନ୍ତାରେ ଯେପରି ଶୃଙ୍ଖଳା ରହେ ନାହିଁ, କବିତାରେ ମଧ୍ୟ ସେହିପରି ବିଖଣ୍ଡିତ ଚିନ୍ତାଧାରା ସ୍ଥାନ ପାଏ । ମାନସିକ ପ୍ରକ୍ରିୟାର ପ୍ରାଧାନ୍ୟ ଅଧିକ ଦେଖାଯାଏ । Eliotଙ୍କ ଭାଷାରେ "We talk as if thought was precise and emotion was vague. In reality there is precise emotion and there is vague emotion. To express precise emotion requires as great an intellectual power as to express precise thought." ତେଣୁ ଅନେକ ସମୟରେ ବୁଝି ନ ହେଲେ ମଧ୍ୟ କେତେକ କବିତା ଭଲ ଲାଗେ । ମନେ ହୁଏ ଶାମୁକା ଭିତରେ ମୁକ୍ତା କେଉଁଠି ଅଛି ନିଶ୍ଚୟ । ମନ ଭିତରେ ହେଉଥିବା ଶବ୍ଦର ଅର୍କେଷ୍ଟ୍ରା, ଅର୍ଥ ଓ ସ୍ୱରର ସଙ୍ଗୀତର ପ୍ରତିଧ୍ୱନି

ରୂପେ ପାଠକର ମନକୁ କମ୍ପିତ ଦୋହଲାଇ ପାରେ । ଅନ୍ୟ ପକ୍ଷରେ ଯେଉଁମାନେ ଆଧୁନିକ କବିତା ଦୁର୍ବୋଧ ବୋଲି କହନ୍ତି ସେମାନଙ୍କ ଭିତରୁ ଅନେକ ଆଧୁନିକ କବିତା ଆଦୌ ପଢ଼ି ନ ଥାନ୍ତି । ଏଇଟା ମୁଖ୍ୟତଃ ଉଦାସୀନତା ଓ ଚିନ୍ତାଶୈଥିଲ୍ୟର ପରିଣତି ; ଆଧୁନିକତାର ଦୋଷ ନୁହେଁ ।

ତେଣୁ କବି ଓ ପାଠକର ସମ୍ପର୍କ ପାରସ୍ପରିକ ବିଶ୍ୱାସ, ସହାନୁଭୂତି ଓ ଧୈର୍ଯ୍ୟ ଉପରେ ପ୍ରତିଷ୍ଠିତ ହେବା ଉଚିତ୍ । କୌଣସି କବି କେବେ ସବୁ ଲୋକଙ୍କ ପାଖରେ ପହଞ୍ଚି ପାରିବ ନାହିଁ । ତଥାପି ସେ ସ୍ୱୟଂ ସମ୍ପୂର୍ଣ୍ଣ ଏକାକୀ ନୁହେଁ । ସେ ସମାଜ ଦ୍ୱାରା ପ୍ରଭାବିତ ଏବଂ ଅନେକାଂଶରେ ସମାଜକୁ ପ୍ରଭାବିତ କରିବାକୁ ସକ୍ଷମ । ଏହା ହିଁ ତା'ର ଦ୍ୱୈତ ଭୂମିକା । ଆଜି ଯେତେବେଳେ ଆମ ଜୀବନରେ ଅତି ସାଧାରଣ ଓ ଅତି ବ୍ୟାପକ ଏକ ଆଧିଭୌତିକ ଦୈହିକ ଭ୍ରାନ୍ତି ଦେଖା ଦେଇଛି ଏବଂ ଏ ଭ୍ରାନ୍ତିକୁ ଆମେ ଏତେଦିନ ସହି ଆସିଲୁଣି ଯେ ଏହା ଆମକୁ ସ୍ୱାଭାବିକ୍ ପରି ମନେ ହେଲାଣି । ଆଜିର କବିତାକୁ ପୁଣି ସେହି ପୁରାତନ ଜାଗତିକ ସତ୍ୟ ଓ ଅଶ୍ରୁସିକ୍ତ ସ୍ୱାଦକୁ ଫେରି ଯିବାକୁ ହେବ । ତା ନ ହେଲେ କଳା କ୍ଷଣସ୍ଥାୟୀ ଓ ପ୍ରାଣ ପ୍ରାଚୁର୍ଯ୍ୟ ହୀନ ହୋଇ ପଡ଼ିବ ।

କବିତାରେ ସୌନ୍ଦର୍ଯ୍ୟବୋଧ ଓ ମାନବିକତାର ଦ୍ୱନ୍ଦ ଦେଖା ନ ଦେଉ । ଏହା ହିଁ କଳାବିତ୍‌ର ଶ୍ରେଷ୍ଠ କାମନା ହେଉ । କାରଣ ଏ ଦ୍ୱନ୍ଦ୍ୱ ଫଳରେ ଆଜିର କଳାକାର ହୁଏତ ପ୍ରଗତିଧର୍ମୀ ସାମାଜିକ ମନୋବୃତ୍ତି ଗ୍ରହଣ କରି ବସୁଛି ।



# ସାଲନ୍ଦୀ, ସୁଲଗ୍ନା ଏବଂ ମୋର ବ୍ୟକ୍ତିଗତ ଶୋକର ପୁନରାବୃତ୍ତି

ସାଲନ୍ଦୀ ଏକ ନଦୀର ନାମ । କିନ୍ତୁ ସେହି ନଦୀ ସହିତ ସୁଲଗ୍ନାର ସାମଞ୍ଜସ୍ୟ ଅତି ଅଦ୍ଭୁତ ପ୍ରକାରର । ସାଲନ୍ଦୀ ପରି ସୁଲଗ୍ନା ନାମକ ସେଇ ଝିଅଟି ଅତି ବେଶୀ ନିରୁତ୍ସାହ—ଅତି ବେଶୀ ନିସ୍ତରଙ୍ଗ, ଯାହାର ମିଛ କଥାରେ ମୁଁ ଆଜଯାଏ ବଞ୍ଚି ରହିଛି ଜୀବନକୁ ସାମ୍ନା କରି । ସୁଲଗ୍ନା କଥା ମନେ ପଡ଼ିଲେ ଟିକି ଟିକି ଫୁଲରେ ଭରପୂର ଗୁଛି ଗୁଛି ଗଛଟି ମନେ ପଡ଼େ । ଅନ୍ୟମନସ୍କତାରେ ମନ ଭରିଯାଏ । ବେଳେ ବେଳେ ଇଚ୍ଛା ହୁଏ ମୁଁ ସାଲନ୍ଦୀ ପାଖକୁ ଯାଆନ୍ତି, ତାକୁ ଅନୁଭବ କରନ୍ତି—ଘଡ଼ିଏ ତା' ପାଖରେ ବସନ୍ତି ଏବଂ ଆତୁର ଉନ୍‌ମସ୍ତ ହୋଇ କହନ୍ତି—ତୁ କେତେ ସୁନ୍ଦର, କେତେ ଶାନ୍ତ, ଠିକ୍ ଗୋଟାଏ ପ୍ରେମିକା ପରି । ତୋର ଏଇ ମୂର୍ଖ ଗୃହାଣୀ ମୋତେ ଅତୀତ, ଭବିଷ୍ୟତ ଏବଂ ବର୍ତ୍ତମାନ ସବୁ ଭୁଲାଇ ଦେଇଛି । ମୁଁ ତୋ ସହରର ନୁହେଁ ; ତଥାପି ତୁ ମୋର ଅତି ଅନ୍ତରଙ୍ଗ ହୋଇଯାଇଛୁ । ପ୍ରଥମ ଦେଖାରେ ମୋର ମନେ ହୋଇଛି ତୁ ସାଲନ୍ଦୀ ନୁହେଁ, ତୁ ସୁଲଗ୍ନା—ଜୀବନର ପୃଷ୍ଠା ପୃଷ୍ଠା ବ୍ୟାପି ପରୀଜସ୍ନୁର କାହାଣୀ ଭିତରେ ଚନ୍ଦନର ବାସ୍ନାପରି ମୋତେ ତୁ ଘେରି ରହିଛୁ । ମୁଁ ଉଲ୍ଲାସ ଏବଂ ଯନ୍ତ୍ରଣାରେ ବାରମ୍ବାର ଶିହରି ଉଠିଛି । ତୁ ଆନନ୍ଦ, ଆଉ ବର୍ତ୍ତମାନ । ତୁ ଅମୃତ କନ୍ୟା ସାଲନ୍ଦୀ ।

ସତେ କଣ ମୁଁ ମହକି ଯାଉଛି ଭିତରେ ଭିତରେ, ସତେ କଣ ମୁଁ ପଲ୍ଲବି ଉଠୁଛି ଗଛପରି ? ତା'ହେଲେ କାହିଁକି ଏମିତି ଇଚ୍ଛା ହେଉଛି ରାତି ରାତି ନ ଶୋଇ ତୋ କଥା ଲେଖିପିବାକୁ ? ଇଚ୍ଛା ହେଉଛି ତୋର ସେଇ ଅର୍ଥପୂର୍ଣ୍ଣ ସ୍ମିହାଣୀକୁ ମୋନାଲିସାର ସ୍ମିହାଣୀ ପରି ଅମର କରି ଦେବାକୁ—ଶହେ ଆଠ ରାଗିଣୀ ଏକ ସଙ୍ଗେ ମୋ ଭିତରେ ଗୁମୁରି ଉଠୁଛି କାହିଁକି ? ହୁଏତ ମୋ ଭିତରର କବିସତ୍ତା ସଜାଗ ହୋଇ-

ଉଠିଛୁ । ମୁଁ କବ ପାଲଟିଗଲ । ସାଳନ୍ଦୀ ଏବଂ ସୁଲଗ୍ନା—ସୁଲଗ୍ନା ଏବଂ ସାଳନ୍ଦୀ ଦୁହେଁ ମୋ ଜୀବନର ପରିପୂରକ । ସାଳନ୍ଦୀର କୁହୁଡ଼ିଘେରା ସକାଳ, ସାଳନ୍ଦୀର ଅନ୍ଧାରୁଆ ବାଉଁଶ ବଣରୁ ଓହ୍ଲାଇ ଆସୁଥିବା ସଞ୍ଜ ସବୁ ଭିତରେ ମୁଁ ଘନିଷ୍ଠ ହୋଇଯାଇଛୁ ।

ସାଳନ୍ଦୀ ପରି ସୁଲଗ୍ନା ମୋ ଜୀବନରେ ଏକ ସ୍ମରଣୀୟ ଅଧ୍ୟାୟ । ସୁଲଗ୍ନା ଥିଲା ମୋର ସତ୍ତାର୍ଥ । ସାଳନ୍ଦୀ ସହିତ ତାର ଅପୂର୍ବ ସାମଞ୍ଜସ୍ୟ । ଠିକ୍ ସାଳନ୍ଦୀ ପରି ତାର ପ୍ରକୃତି । ସାଳନ୍ଦୀ ପରି ତାର ସ୍ନିଗ୍ଧ ଗୃହିଣୀ ମୋତେ ହତବାକ୍ କରିଦିଏ । ମୋତେ ମୁଗ୍ଧ କରିଦିଏ ବେଳେ ବେଳେ । ମଧ୍ୟ ରାତ୍ରିର ନିର୍ଜନ ଆକାଶ ତଳେ ସୁଲଗ୍ନାର ସେହି ନିଷ୍ପାପ ଆଖି ଯୋଡ଼ିକୁ ଅତି ଅନ୍ତରଙ୍ଗ ଭାବରେ ଅନୁଭବ କରିବାକୁ ଇଚ୍ଛା ହୋଇଛୁ । କିନ୍ତୁ ସୁଲଗ୍ନା ଠିକ୍ ପୃଥିବୀ ପରି ଅତିବେଶୀ ନିଷ୍ଠୁର, ଅତିବେଶୀ ନିରୁତ୍ତାପ—ସେ ଏତେ ସବୁ କ୍ରିୟା ପ୍ରତିକ୍ରିୟାରେ ବିଶ୍ୱାସ କରୁ ନ ଥିଲା । ସେଥିପାଇଁ ହଠାତ୍ ଦିନେ ସୁଲଗ୍ନା ବାଟ ଭାଙ୍ଗି ଅନ୍ୟ ରାସ୍ତାରେ ଚାଲି ଯାଇଥିଲା । ଠିକ୍ ସେତିକି ବେଳେ ମଧ୍ୟ ରାତ୍ରିର ନିଃଶବ୍ଦ ଶୂନ୍ୟତା ସବୁ ମୋ ଭିତରେ ଜମା ହୋଇ ଯାଇଥିଲ । ଏକ ମୃଦୁ ଭୂମିକମ୍ପରେ ମୋ ହୃତ୍ପିଣ୍ଡ ଥରି ଯାଇଥିଲା ସେଦିନ । ସବୁ ସତ୍ତ୍ୱେ ସୁଲଗ୍ନା ମୋ ପାଇଁ ଏକ ମୁଗ୍ଧ ମଧୁର ଅନୁଭବ । ସାଳନ୍ଦୀ ପରି ସିଏ ବି ମୋ ଏକକ ଜୀବନ, ଜୀବନ ପରିଧି ଭିତରେ ଏକ ଅବିସ୍ମରଣୀୟ ଧୂପର ବାସ୍ନା । ଜ୍ୟୋତିର୍ମୟ ସ୍ୱପ୍ନର ଝଲ୍ଲକା । ତାର ଉଚ୍ଚାଟନରେ ସମ୍ମୋହନରେ ଜୀବନର ସବୁ ଅସଫଳତାକୁ ମୁଁ ସ୍ୱୀକାର କରିଛୁ ।

ମୁଁ ପ୍ରତିବଦ୍ଧ । ସମୟର ପରିଧି ଭିତରେ ସ୍ଥିର ମାନଚିତ୍ର ପରି ମୁଁ ଖୁଣ୍ଟ ପାଲଟି ଯାଇଛୁ । ମୋର ଇଚ୍ଛା ହେଉଛୁ ରାତି ରାତି ବସି ଏକ ଅୁଣ୍ଡା ଗଛର ଆତ୍ମଲିପି ଲେଖିଦିବି । ଯେଉଁ ଗଛ ଦିନେ ସବୁଜ ଶ୍ୟାମଳ ହୋଇ ଉଠିଥିଲା, ଅସଂଖ୍ୟ ଫୁଲ ଆଉ କଢ଼ରେ ଡାଳ ପତ୍ର ଯାହାର ଏକାକାର ହୋଇ ଯାଇଥିଲା, ସେ ଗଛରେ ଆଜି ଶ୍ମଶାନର ଶୂନ୍ୟତା । ଏପରି ଏକ ଅୁଣ୍ଡା ଗଛ ମୂଳରେ ଛିଡ଼ା ହୋଇ ଦେଖୁଛୁ

କିଛି ଦୂରରେ ଅନେକ ଆଲୋକର ଉଦ୍‌ଭାସିତ କିରଣ । ମୋତେ ବାଦ୍‌ଦେଇ ସମସ୍ତେ ଆଜ ଚଳମାନ । ଗତିବାନ୍ । ସମସ୍ତଙ୍କ ମନରେ କୃଷ୍ଣଚୂଡ଼ାର ଆଲୋକ । ସମସ୍ତଙ୍କ ଆଖିରେ ଅନୁରାଗର ରଙ୍ଗ । ମୁଁ ଏକ କ୍ଷୁଦ୍ର ଏମୋଇବା । ବ୍ୟକ୍ତିଗତ ଶୋକର ଉଚ୍ଛ୍ୱାସ ଭିତରେ ମୁଁ ଆଜ ସଙ୍କୁଚିତ—ଅଳ୍ପ କିଛି ଦୂରରେ ରକ୍ତ ଜୁଡ଼ୁବୁଡ଼ୁ ଶବର ଶୋଭାଯାତ୍ରା । ଏଭଳି ଭୟଙ୍କର ଦୃଶ୍ୟ ମୁଁ ଆଜଯାଏ କେବେ ଦେଖି ନ ଥିଲି । ପୁନଶ୍ଚ ସେଇ ଅୁଣ୍ଡା ଗନ୍ଧର ଆତ୍ମକାହାଣୀ । ସାଲଫୀ ଏବଂ ସୁଲଗ୍ନା—ଏକ ଅବିସ୍ମରଣୀୟ ଧୂପର ସୌରଭ ।



# ସାଂପ୍ରତିକ ଓଡ଼ିଆ କବିତାର ଭବିଷ୍ୟତ

ସାଂପ୍ରତିକ କବିତା ସାଂପ୍ରତିକ ଜୀବନର ଆତ୍ମଲିପି । ସେଥିରେ ବର୍ତ୍ତମାନ ଜୀବନର କ୍ଳାନ୍ତି, ନୈରାଶ୍ୟ, ଅବସାଦ, ପାପବୋଧ, ବ୍ୟର୍ଥତା ଓ କ୍ଷୁବ୍‌ଧତା ପ୍ରାଧାନ୍ୟ ଲାଭ କରିଛି । ବର୍ତ୍ତମାନର ମଣିଷ ଷୟିଷ୍ଣୁ ସଭ୍ୟତା ଓ ସଂସ୍କୃତିର ସନ୍ଧିକ୍ଷଣରେ ଦଣ୍ଡାୟମାନ । ମଣିଷର ଆଶା ଓ ଆକାଂକ୍ଷା ଓ ବାସ୍ତବ ଜୀବନ ମଧ୍ୟରେ କୌଣସି ପ୍ରକାର ସଙ୍ଗତି ଲକ୍ଷ୍ୟକରି ହୁଏ ନାହିଁ । ସଭ୍ୟତାର ଏହି ସଙ୍କଟ ସମୟରେ ମଣିଷ ନିକଟରେ ଗୌରବର ହୋଇ କୌଣସି କଥା ନାହିଁ । ପ୍ରଥାଗତ ମୂଲ୍ୟ-ବୋଧ ଓ ଧର୍ମ ବିଶ୍ୱାସ ଭାଙ୍ଗିଛି, ଆତ୍ମପ୍ରତ୍ୟୟ ଭୂଲୁଣ୍ଠିତ ହେଉଛି । ସାମାଜିକ ଜୀବନ ବିପର୍ଯ୍ୟସ୍ତ ହୋଇଛି । ଅନ୍ତରଙ୍ଗତା ଏବଂ ଆତ୍ମୀୟତା ମଧ୍ୟ ପାରିବାରିକ ଜୀବନରୁ ବିଦାୟ ନେଇ ଯାଇଛି । ନୈରାଶ୍ୟ ମଧ୍ୟରେ ଜୀବନ ମୃତ୍ୟୁଗ୍ରସ୍ତ । ଜୀବନର କ୍ଳାନ୍ତି, ନୈରାଶ୍ୟ, ଉଦ୍ଦେଶ୍ୟହୀନତା ଓ ଆଧ୍ୟାତ୍ମ ଜୀବନର କେନ୍ଦ୍ରଚ୍ୟୁତି ସମ୍ବନ୍ଧରେ ସଚେତନତା ବଳରେ ଏଲିଏଟ୍ ସେଦିନ ଧ୍ୱଂସୋନ୍ମୁଖୀ ପଶ୍ଚିମ ୟୁରୋପର ସଭ୍ୟତାକୁ ପୋଡ଼ାଭୂଇଁ ରୂପେ ଲକ୍ଷ୍ୟ କରିଥିଲେ । ଆଜିର ଶ୍ରେଷ୍ଠ ପୃଥିବୀରେ ସଭ୍ୟତାର ସଙ୍କଟ ୟୁରୋପରେ ସୀମାବଦ୍ଧ ହୋଇ ରହିନାହିଁ, ବିଶ୍ୱବ୍ୟାପିଛି, ଓଡ଼ିଶାକୁ ମଧ୍ୟ ଛୁଇଁଛି । ସାଂପ୍ରତିକ କବିମାନେ ଉଚ୍ଚଶିକ୍ଷିତ ଓ କାଳସଚେତନ । ସାଧାରଣ ଲୋକଙ୍କ ଠାରୁ ସେ ଅଧିକତର ତୀକ୍ଷ୍ଣ ଅନୁଭୂତିର ଅଧିକାରୀ । ସେ କେବଳ ଓଡ଼ିଆ କବି ନୁହଁନ୍ତି ; କିମ୍ବା ଓଡ଼ିଶାର ଇତିହାସ ଭୂଗୋଳରେ ସୀମାବଦ୍ଧ ନୁହଁନ୍ତି । ସଚି ରାଉତରାୟଙ୍କ ନ୍ୟୁୟର୍କ ଏଆର୍ ପୋର୍ଟର 'ନିର୍ଧୂମ୍ ସକାଳ' କିମ୍ବା ବିନୋଦ ନାୟକଙ୍କର "ସୁମେରୁରେ ସନ୍ଧ୍ୟା" କିମ୍ବା ସୀତାକାନ୍ତ ମହାପାତ୍ରଙ୍କର ଜଳଯାଏ "ମସ୍କୋ, ରୋମ୍, ହିରୋସୀମା ଆଉ ନୂଆଖାଲି' ଭୌଗଳିକ ବିଶ୍ୱ ଚେତନାବୋଧର କଥା କହେ । ପାଶ୍ଚାତ୍ୟ କବିମାନଙ୍କ ସହିତ ଆମ କବିଙ୍କର ଅନ୍ତରଙ୍ଗ

ମର୍ମଗତ ସଂଯୋଗ ରହିଛି । ସମଗ୍ର ମାନବ ଜାତି ଯେଉଁଠି ଆଜିର ସଭ୍ୟତା ସଙ୍କଟ ସମ୍ମୁଖୀନ ଜର୍ଜରିତ, ସେଠି ସୂକ୍ଷ୍ମ ଅନୁଭୂତିପ୍ରବଣ ଆତ୍ମ-ସଚେତନ କବି ନିଷ୍ପୃହ ରହିବା ଅସମ୍ଭବ । ତାଙ୍କ କବିତାର ପ୍ରାଣ-କେନ୍ଦ୍ରରେ ତେଣୁ ସ୍ୱାଭାବିକ ଭାବରେ ବିଶ୍ୱବ୍ୟାପୀ ଯୁଗଯନ୍ତ୍ରଣାର ସୁକଠିନ ବେଦନା ପ୍ରକାଶ ପାଇଛି । ସାଂପ୍ରତିକ କବି ଓ କବିତାର କାବ୍ୟ ନାୟକ ନିଜକୁ ଦାୟିତ୍ୱହୀନ ବୋଲି ମନେ କରି ପାରୁ ନାହାନ୍ତି । ସେଥିପାଇଁ ସାଧାରଣ ବ୍ୟକ୍ତି ଠାରୁ ତାଙ୍କର ଯନ୍ତ୍ରଣା ଓ ବେଦନା ଅଧିକତର । ପୁନଶ୍ଚ ସେ ଅତି ବେଶୀ ନିରୁପାୟ । କେଉଁଠି ସେ ବ୍ୟାକୁଳ ହୋଇ ଆଧ୍ୟାତ୍ମିକ ଉତ୍ତରଣର ପ୍ରୟାସ ପୋଷଣ କରୁଛନ୍ତି ତ ଆଉ କେଉଁଠି ପ୍ରାଚୀନ ମୂଲ୍ୟବୋଧ ଓ ପରମ୍ପରାକୁ ଶ୍ରେୟ ମଣି ତନ୍ମଧ୍ୟରେ ଜୀବନର ସଙ୍କଟରୁ ମୁକ୍ତି ଖୋଜୁଛନ୍ତି । ଏହି ଆତ୍ମଦ୍ୱନ୍ଦ୍ୱ ଓ ଅସଂଲଗ୍ନତା ସାଂପ୍ରତିକ କବିତାର ମୁଖ୍ୟ ସ୍ୱର । ଅନ୍ୟକୁ ଚିହ୍ନିବା ତ ଦୂରର କଥା ସାଂପ୍ରତିକ କାବ୍ୟ ନାୟକ, ନିଜକୁ ମଧ୍ୟ ନିଜେ ଚିହ୍ନେ ନାହିଁ । ନିଃସଙ୍ଗତା ଓ ନିରର୍ଥକତା ତାକୁ ଭୟାର୍ତ୍ତ ଓ ଶଙ୍କିତ ରଖେ । ଏହି ଆଧୁନିକ ମଣିଷର ଗଭୀର କ୍ଳାନ୍ତି, ସଂଶୟ ଶୂନ୍ୟତା, ବିତୃଷ୍ଣା ଓ ବିଚ୍ଛିନ୍ନତା-ବୋଧର ପ୍ରତିଭୂ ହେଉଛି ଗୁରୁ ପ୍ରସାଦ ମହାନ୍ତିଙ୍କର ହରେକୃଷ୍ଣ ଦାସ କବିତା । ତାର ଅନ୍ତର ଓ ବାହାର ସବୁଠି ଶୂନ୍ୟତା ଓ ନିଃସଙ୍ଗତା ।

"ହରେକୃଷ୍ଣ ଦାସ ଗୁଲେ ସହରର ବନ୍ଧୁହୀନ
ଜ୍ଞାତିହୀନ, ନମସ୍କାର, ଜୟହିନ୍ଦ୍—
ସଲାମ୍ ଭିତରେ
ହରେକୃଷ୍ଣ ଦାସ ହଏ ହଠାତ୍ ଗାଡ଼ିରେ ବ୍ରେକ୍
ଅକସ୍ମାତ ଏ କି ଭୟ
କେଉଁ ଘୋର ଦୁର୍ଦ୍ଦିନ ବା କେଉଁ ଘୋର ମହାପାତକର
ଭୟ ଆଉ ପାପ ମିଶି ଏ ସମସ୍ତ ଅନ୍ତସତ୍ତ୍ୱା
ଜୀବନର ଭଗ୍ନାଂଶ କେବଳ ।"

ଏହି ପ୍ରସଙ୍ଗରେ ଏଲିୟଟ୍‌ଙ୍କ The Cocktail Partyର Celio ଚରିତ୍ରର କଥା ମନେ ପଡ଼େ । ସେ ହରେକୃଷ୍ଣ ଦାସ ପରି ବଡ଼

ନିଃସଙ୍ଗ ଓ ବିଷଣ୍ଣ । ଚିଶଙ୍କୁର ମଧ୍ୟ ସ୍ୱର୍ଗରେ 'କବି ସୀତାକାନ୍ତ ମହାପାତ୍ର'ଙ୍କ କାବ୍ୟ ପୁରୁଷ ମଧ୍ୟ ସେହିପରି ଅନ୍ତର୍ବେଶୀ ନିଃସଙ୍ଗ ।

"ସେ ଦିନ ମୁଁ କହୁଥିଲି ମନେ ଅଛି
ପଛରେ ଧ୍ୱସ୍ତ ଦ୍ୱାରକା, ସମୁଦ୍ରର ଉଜାଣି ଜୁଆରେ
ଏରି କଳାଇ ବନେ ଯେତେ କନ୍ଦଳ ଓ ଭାଇ, ପୁତ୍ର
ମାତା ଓ ମାତୁଳ ନଷ୍ଟ ଯେତେ କ୍ଷତ୍ରିୟକୁଳ
ନିଃସଙ୍ଗ ପୃଥିବୀ ଆଉ ସାଥୀ ହୀନ—
ମୁଁ ସନ୍ତପ୍ତ
ମାଡ଼ି ଆସେ କାଳ ଅମାବାସ୍ୟା ।"

ସାଂପ୍ରତିକ କବିତାରେ ଜୀବନ ଯେତିକି ସତ୍ୟ ମୃତ୍ୟୁ ମଧ୍ୟ ସେତିକି ଆପଣାର । ତେଣୁ ସାଂପ୍ରତିକ କାବ୍ୟନାୟକ ମୃତ୍ୟୁଚେତନାରେ ଆକ୍ରାନ୍ତ । ଅର୍ଥହୀନ ବର୍ତ୍ତମାନ, ଜୀବନର କ୍ଳାନ୍ତି, ନୈରାଶ୍ୟ, ବିଷଣ୍ଣତା, ପାପବୋଧ, ନିଃସଙ୍ଗତା ଓ ଯାନ୍ତ୍ରିକ ଗତାନୁଗତିକତା ଠାରୁ ଆଧୁନିକ କବିତାର କାବ୍ୟନାୟକ ପରିତ୍ରାଣ ଲୋଡ଼େ । ସମଗ୍ର ପୃଥିବୀ ଯେଉଁଠି କାଳ-ସ୍ରୋତରେ ଅନିବାର୍ଯ୍ୟ ମୃତ୍ୟୁକୁ ଭେଟିବାକୁ ଧାଇଁଛି, ସେଠାରେ କବିତାର ବା ସ୍ଥାୟିତ୍ୱ କେତେ ? କାବ୍ୟନାୟକ ଅହରହ ବ୍ୟାକୁଳ ହୋଇ ମୃତ୍ୟୁର ଆଶୀର୍ବାଦ ଲୋଡ଼ୁଛି । ଭରି ଭଗ୍ନ ଲଗ୍ନ ଆଉ କେତେ ଦୂର/ କେତେ ଦୂର ରଜନୀର ଅନ୍ତିମ ପ୍ରହର ! ରମାକାନ୍ତ ରଥଙ୍କ ବିମାନ ଦୁର୍ଘଟଣାରେ ମୃତ୍ୟୁ କବିତାରେ ନାୟକ ଜାଣିଛି—"ମୋ ଆଇଷ ଭବିଷ୍ୟତ ଭାସିଯାଏ ଛଅଖଣ୍ଡ କାଠର ଭେଳାରେ/ସମାଜ ବିମାନ ପରି ସମୁଦ୍ରର ରକ୍ତାକ୍ତ ଆକାଶେ" । କବିଙ୍କ ମୃତ୍ୟୁଚେତନାକୁ ତେଣୁ ଅସ୍ୱାଭାବିକ ରୁଗ୍ଣ ମନୋଭାବ ସାଂପ୍ରତିକ ବୋଲି କହିହେବ ନାହିଁ ; ତାହା ଅନ୍ୟାନ୍ୟ ମାନବିକ ଆବେଗାନୁଭୂତି ପରି ଚିରନ୍ତନ ସତ୍ୟ ।

ସାଂପ୍ରତିକ କବିତାର ଆତ୍ମସଚେତନ କାବ୍ୟନାୟକ ନିଜ ଅସ୍ତିତ୍ୱର ନିରର୍ଥକତା ସମ୍ପର୍କରେ ସଚେତନ । ଜୀବନ ପ୍ରତି ତାହାର ଦୃଷ୍ଟିଭଙ୍ଗୀ ସମ୍ଭାବନାମୟ ନୁହେଁ । ଆତ୍ମପ୍ରତ୍ୟୟହୀନ ଏହି କାବ୍ୟନାୟକ ଉଦ୍‌ଭ୍ରାନ୍ତ, ନିରାଶ, କ୍ଳାନ୍ତ, ବିଷଣ୍ଣ ଓ ଅବସାଦଗ୍ରସ୍ତ । ଦଶହରା ୧୯୭୧ର

କାବ୍ୟ ନାୟକ ବୁଝିଛି—'ମୁଁ ଉଲ୍ଲୁ କାଙ୍ଗାଳ, ମୋର ଆପଣାର କଳ୍ପନାକୁ ଯାହା ଆଲୋକିତ କରୁଥିଲା ଅନ୍ଧାରର ଚାହାଁ ଜଙ୍ଗଲରେ' (ରମାକାନ୍ତ ରଥ) ବର୍ତ୍ତମାନ ଜୀବନ ସଦା ମୃତ୍ୟୁ ଭୟାକୁଳ, ନିଃସଙ୍ଗ, ଅସହାୟ ଓ ନିରର୍ଥକ । ବାର୍ଦ୍ଧକ୍ୟ ପରି ଶକ୍ତିହୀନ । 'ନିଷ୍ଟ ପତ୍ତିଁଙ୍ଗ'ର କାବ୍ୟନାୟକ ଉପଲବ୍ଧି କରିଛି ବଞ୍ଚିବା ମାନେ ଜୀବନ-ନିଷ୍ଟ ପଡ଼ିଁଶିବା—"ଜୀବନ ଯେଉଁଠି ନିରର୍ଥକ ସେଠାରେ ପଡ଼ିଁଶିବା ଅର୍ଥ କାର୍ଣ୍ଣି—କୂଳରେ ଆଉ ଅଛୁ କିଏ, ଆ ଡେଇଁ ପଡ଼ିବା ପାଣିକି ।" ଏହା ଜୀବନ ପ୍ରତି ଗଭୀର ବ୍ୟଙ୍ଗର ସୂଚନା ଦେଉଛି ।

ସାଂପ୍ରତିକ ବିଚ୍ଛିନ୍ନ ଆଧୁନିକ ଜୀବନ ପରି ଆଧୁନିକ କବିତାର ଙ୍ଗହିତ କାବ୍ୟ ପ୍ରକରଣ ମଧ୍ୟ ପ୍ରେମର ଆବେଗ ପ୍ରକାଶ କ୍ଷେତ୍ରରେ ଅନ୍ତରାୟ ହୋଇ ରହିଛି । ସାଂପ୍ରତିକ କବି ନାରୀକୁ ଦେଖୁଛନ୍ତି ସ୍ୱକୀୟ ଦୃଷ୍ଟିରେ । ସେମାନେ ଦେଖୁଛନ୍ତି ପ୍ରତିମା ନାୟକ ମୁହଁରେ "ଶାଙ୍କାର ହସ", ସେ ଛୁରଗ୍‌ଣା, "ତନୁତାର ରୋଗଜୀର୍ଣ୍ଣ, ମୁଖ ବ୍ରଣ ଦୁଷ୍ଟ" । କବି ସଚ୍ଚିଦାନନ୍ଦଙ୍କ ନଦୀ (୧୯୬୯) କବିତାର "ସେ ଏକ ବିବସ୍ତ୍ରା ନଦୀ/ ଖୋଜିବୁଲେ କ୍ଷଣେ କ୍ଷଣେ ନୂତନ ପରିଧି ।" ପ୍ରେମ ଅପେକ୍ଷା ନିଜ ଅସ୍ତିତ୍ୱ ତା ପାଖରେ ଅଧିକତର ମୂଲ୍ୟବାନ ।

ସାମ୍ପ୍ରତିକ କବିତା ସହରର କବିତା । ଏଠି ସହର ସଭ୍ୟତା ମଣିଷ ମଣିଷ ମଧ୍ୟରେ ବ୍ୟକ୍ତିଗତ ପାରସ୍ପରିକ ଆଳାପ ପରିଚୟ ସମ୍ପର୍କ ସୂତ୍ର ଛିନ୍ନ କରି ଦେଇଛି । ସହରର ସୀମା ବାହାରେ ଥିବା ପଲ୍ଲୀ ଓ ପ୍ରକୃତିଠାରୁ ମଣିଷର ବିଚ୍ଛିନ୍ନତା ବଢ଼ାଇଛି । କବି ସଚ୍ଚିଦାନନ୍ଦଙ୍କ ଏ ସହରଟା କବିତାର କାବ୍ୟନାୟକ ସବୁ କୁତ୍ସିତତା ଓ ବୀଭତ୍ସତା ଭିତରେ ସୌନ୍ଦର୍ଯ୍ୟ ଖୋଜୁଛି—

ସନ୍ଧ୍ୟାଗମେ ଏ ସହର ପୁଣି ହସେ
ମୃତ ମମି ପରି
ବିକୃତ ବିହୋସେ
କମ୍ପା

'ଅନ୍ତର୍ଥି ସନ୍ଧାର'ର କାବ୍ୟ ନାୟକ ଆଲୋକିତ ସହରରେ ବଣର ଅନ୍ଧାର ଦେଖିଛି ।

"ଏତେ ଅନ୍ଧାର ଯେ
ଏ ସହର ନୁହେଁ ବଣ ବୋଲି ନୁଆଲୋକ ଭାବପାଟରେ ।"

ସହରର ଏକାକୀତ୍ୱ ଭିତରେ ବନ୍ଧୁହୀନ, ଜ୍ଞାତିହୀନ, ନିଜ ଅସ୍ତିତ୍ୱର ସମ୍ମୁଖୀନ ହୁଏ । ସେ ଜାଣେ ଏ ସହର ଅଳୀକ ସହର—ଭାନୁଜୀ ରାଓଙ୍କ

'ହୋ ସହର ଅଳୀକ ସହର
ମାଲି ଜହ୍ନ ମରଯାଏ ଆସେ ପୁଣି ଫିଚ୍—
ବୋଲା ରାତି
ସେ ରାତିର ମୁହଁ ନାହିଁ
ଆଖି ନାହିଁ
ନାହିଁ ନାକ କାନ ।"

ସାଂପ୍ରତିକ କବି ପ୍ରକୃତିର ସୌନ୍ଦର୍ଯ୍ୟ ଆସ୍ୱାଦନ କରିବାକୁ ସନ୍ଦେହ ବିମୁଖ ନୁହଁନ୍ତି ତଥାପି ଏ ଇଚ୍ଛା ଖୁବ୍ ବିରଳ । କବି ଗୁରୁ-ପ୍ରସାଦଙ୍କ 'ସିଉଁଆ' କବିତାରୁ ଏହି ମୁଗ୍ଧ ଅନୁଭବ ଆମେ ଅନୁମାନ କରି ପାରିବା—

"ଧାନ ସିଉଁ ନଈ ସିନା ଏଠି ନାହିଁ
ଏଠି ଶୀର୍ଣ୍ଣ ସିଉଁଆ ନଈରେ
ରାତି ଭୋର ଅନ୍ଧାରରେ ଚାର ଭସେ ବିବର୍ଣ୍ଣ ଶ୍ରୀହୀନ
ଏଠି ବାଲି ଅପନ୍ତରା ଡେଇଁ ଘାସ ଗୁଚୁଆ ବଣ
ରାତିର ପବନ ଆସେ ଖୋଜି ଖୋଜି
ଝରକାରେ ଆଖିପତା ଉଡ଼ିବର ଆଲୁଅ ।"

ଆଧୁନିକ ମଣିଷର ନିଷ୍ପ୍ରାଣ ଜୀବନବୋଧର ଛବି ସାଂପ୍ରତିକ କବିତା । ସେହି ଛବିରେ ସ୍ୱାଭାବିକ ଭାବରେ ଲକ୍ଷ୍ୟହୀନ ରୁଗ୍ଣ ମୂଲ୍ୟବୋଧ ନଷ୍ଟ କ୍ଷୟିଷ୍ଣୁ ମଧ୍ୟବିତ୍ତ ଓଡ଼ିଆର କ୍ଲାନ୍ତି, ଅବସାଦ, ଅସହାୟତା ଫୁଟିଛି । ଯାହା ସତ୍ୟ ତାହା ଆଜି କବିତା, ତେବେ ସ୍ପଷ୍ଟ

ବାସ୍ତବର କଥା କହିବାକୁ ମଧ୍ୟ ସାଂପ୍ରତିକ କବିତା ବେଶ୍ ରୋମାଣ୍ଟିକ୍ ହୋଇ ପାରିଛି । ଏହା ଯେତେ ବସ୍ତୁନିଷ୍ଠ (Objective) ସେତେ ମନୋନିଷ୍ଠ (Subjective) ମଧ୍ୟ ।

ସାଂପ୍ରତିକ ଓଡ଼ିଆ କବିତାର ଭବିଷ୍ୟତ ସମ୍ପର୍କରେ ଏତିକି କହିଲେ ଯଥେଷ୍ଟ ହେବ ଯେ ପୁରାତନ ଓ ନୂତନ ମୂଲ୍ୟବୋଧର ସଂଘର୍ଷ ଦ୍ୱାରା ଆଜିର କବିତା ଭାରାକ୍ରାନ୍ତ ହେଲେ ମଧ୍ୟ ସାଂପ୍ରତିକ କବିତାରେ ଯେଉଁଭଳି ଉଜ୍ଜ୍ୱଳ ପ୍ରତିଭା ଓ ଶାଣିତ ମନୀଷାର ବିକାଶ ଘଟିଛି ତାହା ଗଣଜୀବନକୁ ଯେ ପ୍ରଭାବିତ କରି ପାରି ନାହିଁ ଏହା ଅବଶ୍ୟ ସ୍ୱୀକାର୍ଯ୍ୟ । ଆଧୁନିକ ମଣିଷର ଜୀବନଯାତ୍ରା ଦ୍ୱାରା କବି ସମାଜଠୁ ପୃଥକ୍ ହୋଇ ପଡ଼ିଛନ୍ତି । ଶିଳ୍ପାୟନ ପ୍ରତି ମଣିଷର ଆକର୍ଷଣ ବଢ଼ିବା ଦିନରୁ ସଂସ୍କୃତି ସମ୍ପନ୍ନ ବ୍ୟକ୍ତିଙ୍କର ଅସମ୍ମାନ ବଢ଼ିଛି । ସମାଜ ଓ କବି ପରସ୍ପର ପ୍ରତି ବିମୁଖ ହୋଇ ଉଠିଛନ୍ତି । କବିଙ୍କର ସମାଜବିମୁଖତାରୁ କିଛି କମ୍ କ୍ଷତି ହୋଇନାହିଁ । ପ୍ରଥମେ ତାହା ଆତ୍ମକୈନ୍ଦ୍ରିକ ଓ ଦୁର୍ବୋଧ୍ୟ ହୋଇ ପଡ଼ିଛି । ସମଗ୍ର ମଣିଷ ଜୀବନ ସହିତ ତାହାର ସମ୍ପର୍କ ଦୁର୍ବଳ ହେବାରୁ ମାନବିକ ଆବେଗାନୁଭୂତିର ବ୍ୟାପ୍ତି ଓ ବୈଚିତ୍ର୍ୟ କମିଛି । ଫଳରେ ମଣିଷର ଦୁର୍ବଳତା ଓ ଅସହାୟତା ଦେଖି ତାକୁ ବ୍ୟଙ୍ଗ କରିବାକୁ ପ୍ରଲୋଭନ ବଢ଼ିଛି ।

ସାଂପ୍ରତିକ ଓଡ଼ିଆ କବିତାକୁ ସଙ୍କଟମୁକ୍ତ କରିବା ପାଇଁ କବିର ଭୂମିକା ଗୁରୁତ୍ୱପୂର୍ଣ୍ଣ ନିଶ୍ଚୟ । କେବଳ କବି ନୁହେଁ ପାଠକ ମାନେ ସାଂପ୍ରତିକ କବିତାକୁ ବୁଝିବେ । ତେଣୁ ପାଠକ ଏବଂ କବି ମଧ୍ୟରେ ଗୋଟିଏ ଯୋଗସୂତ୍ର ସ୍ଥାପିତ ହେବା ଆବଶ୍ୟକ । ଓଡ଼ିଆ ପାଠକମାନେ ଯଦି ସୃଜନ ଅଭିଜ୍ଞତାର ଅମୂଲ୍ୟ ସ୍ୱାଦ ପ୍ରତ୍ୟାଶା କରନ୍ତି ତେବେ ସେମାନଙ୍କୁ ଆଧୁନିକ କବିତା ପଢ଼ିବାକୁ ପଡ଼ିବ ଏବଂ ସେମାନଙ୍କ ବୋଧଶକ୍ତିକୁ ଗଭୀରତର କରିବାକୁ ହେବ । ଯୁଗ ଚେତନା ସହିତ ନିଜକୁ ପରିଚିତ କରିବାକୁ ପଡ଼ିବ । ପୃଥିବୀର ସଭ୍ୟତା ଓ ସଂସ୍କୃତିରେ ସଙ୍କଟ ଦେଖା ଦେଇଛି । ପାଠକକୁ ମଧ୍ୟ ଏହି ସଙ୍କଟ ସହିତ ଏକାତ୍ମ ହେବାକୁ ପଡ଼ିବ ଏବଂ ସୁକୁମାର ଅନୁଭୂତି ଓ ମନନ ଶକ୍ତିକୁ ବିକଶିତ

କରିବାକୁ ପଡ଼ିବ । ତାହେଲେ ସାଂପ୍ରତିକ ଓଡ଼ିଆ କବିତାର ଭବିଷ୍ୟତ ନିଶ୍ଚିତ ଭାବରେ ଉଜ୍ଜ୍ୱଳ ହେବ, ଏହା ନିଃସନ୍ଦେହ । ଏ କ୍ଷେତ୍ରରେ ପାଠକ ଓ ସାହିତ୍ୟ ରସିକଙ୍କର ଯେପରି ଯଥେଷ୍ଟ କର୍ତ୍ତବ୍ୟ ରହିଛି, ସେହିପରି ମଧ୍ୟ ଯଥେଷ୍ଟ ଉଦାର ସହାନୁଭୂତିଶୀଳ ନିରପେକ୍ଷ ଅନ୍ତର୍ଦୃଷ୍ଟି ସମ୍ପନ୍ନ ହେବା ପାଇଁ ସାଂପ୍ରତିକ କବିତାର ଆଲୋଚକ ସଚେତନ ରହିବା ଉଚିତ୍ ।

